ଚେତାବନୀ!



# କୀଟନାଶକ ଆପଣଙ୍କ ସ୍ୱାସ୍ଥ୍ୟ ପ୍ରତି ବିପଦ

ସିପାକ୍ - ଗୋଷ୍ଠୀ କୀଟନାଶକ ପଦକ୍ଷେପ ପେଟିକା
ସ୍ଥାନୀୟ ପଦକ୍ଷେପ ଯୋଜନା!

Digitized by srujanika@gmail.com

# ସୂଚୀପତ୍ର



*Digitized by srujanika@gmail.com*

# ମୁଖବନ୍ଧ

ଏସିଆର ଗ୍ରାମ୍ୟ ଗୋଷ୍ଠୀମାନଙ୍କୁ କୀଟନାଶକ ଯୋଗୁ ଆସୁଥିବା ବିଭିନ୍ନ ସମସ୍ୟା ବିଷୟରେ ଜଣାଇବା ପାଇଁ ଏହି ଗୋଷ୍ଠୀ କୀଟନାଶକ ପଦକ୍ଷେପ ପେଟିକା ବା *ସିପାକ୍* ପ୍ରସ୍ତୁତ କରାଯାଇଛି । ଆହୁରି ମଧ୍ୟ ସାମୁହିକ ଭାବରେ ଏହି ବିଷୟରେ ଆଲୋଚନା କରିବା ଦିଗରେ ସେମାନଙ୍କୁ ଉତ୍ସାହିତ କରିବା ହେଉଛି ଏହାର ଆଉ ଗୋଟିଏ ଲକ୍ଷ୍ୟ । ନାଗରିକ ଦଳ ଓ ଜନ ସଂଗଠନର ଗୋଟିଏ ଏସିଆନ ଦଳ ଦ୍ୱାରା *ସିପାକ୍* ପ୍ରସ୍ତୁତ ହୋଇଛି ।

- ମାଲେସିଆର *ପେଷ୍ଟିସାଇଡ୍ ଆକ୍ସନ ନେଟୱର୍କ ଏସିଆ ଆଣ୍ଡ ପାସିଫିକ୍*
- *ଗିଟା ପେର୍‌ଟିଓି*, ଇଣ୍ଡୋନେସିଆ
- *ପେଷ୍ଟିସାଇଡ୍ ନେଟୱର୍କ ଫିଲିପାଇନ୍‌ସ*, ଫିଲିପାଇନ୍‌ସ
- *ଟେନାଗନିଟା*, ମାଲେସିଆ

ସମସ୍ୟାର ବିଭିନ୍ନ ଦିଗକୁ ଛୁଇଁବା ପାଇଁ ୯ଟି ପେଟିକା ପ୍ରସ୍ତୁତ କରାଯାଇଛି:

**ଚେତାବନୀ! କୀଟନାଶକ ଆପଣଙ୍କ ସ୍ୱାସ୍ଥ୍ୟ ପ୍ରତି ବିପଦ**

**ନିରବତା ଛାଡ଼ନ୍ତୁ : ବୃକ୍ଷରୋପଣରେ କୀଟନାଶକ**

**ବିଷରୁ ଲାଭ : କୀଟନାଶକ ଶିଳ୍ପ**

**କୀଟନାଶକ ଛାଡ଼! ଗୋଟିଏ ନିରନ୍ତର ଦୁନିଆ ଗଢ଼**

**କୀଟନାଶକ ଆମ ପୃଥିବୀକୁ ଧ୍ୱଂସ କରେ**

**ଧ୍ୟାନ ରଖନ୍ତୁ : କୀଟନାଶକ ନିୟମ**

**କୀଟନାଶକ ଦୂରେଇବା କିପରି : ଗୋଷ୍ଠୀ ସଂଗଠନ**

**ବିଷକୁ ଖୋଜି ବାହାର କର : ଗୋଷ୍ଠୀ ନିରୀକ୍ଷଣ ସହାୟକ**

ଏଭଳି ଆହୁରି କିଛି ପେଟିକା ଆଗକୁ ବାହାରିବାର ଯୋଜନା ରହିଛି । ଏହି ପେଟିକାଗୁଡ଼ିକ ନିଜେ ନିଜେ ସ୍ୱୟଂସମ୍ପୂର୍ଣ୍ଣ ନୁହନ୍ତି । ସ୍ଥାନୀୟ ଭାଷାରେ ଆହୁରି କେତେ ସାମଗ୍ରୀ ଏଥିରେ ଯୋଡ଼ାହେବା ଜରୁରୀ । ଆପଣ ତଳର ତାଲିକା ଭଳି କିଛି ପରିପୂରକ ସାମଗ୍ରୀ ଯୋଡ଼ିପାରିବେ:

| | |
|---|---|
| ବ୍ୟଙ୍ଗଚିତ୍ର | କଣ୍ଢେଇ |
| ନାଟକ | ବେତାର ବାର୍ତ୍ତା |
| ଖେଳ | ସ୍ଲାଇଡ୍ |
| ଫଟୋଚିତ୍ର | ଷ୍ଟିକର |
| ପୋଷ୍ଟର/ଚିତ୍ରମାଳା | ଭିଡିଓ |

ଆଖପାଖରୁ ଖୋଜି ଉପଯୁକ୍ତ ଜିନିଷ ବାହାର କରନ୍ତୁ । ଏଥିରୁ ଅନେକଗୁଡ଼ିଏ ଗୋଷ୍ଠୀ ଦ୍ୱାରା ମଧ୍ୟ ତିଆରି କରାଯାଇ ପାରିବ । ଦିଗ୍‌ଦର୍ଶନ ପାଇଁ ଆପଣ *ପେଷ୍ଟିସାଇଡ୍ ଆକ୍ସନ ନେଟ୍‌ୱର୍କ ଏସିଆ ଆଣ୍ଡ୍ ପେସିଫିକ୍ (ପାନ୍ ଆପ୍)* ସହ ଯୋଗାଯୋଗ କରି ପାରିବେ ।

ପେଟିକା ସମ୍ପର୍କରେ ଆପଣଙ୍କର ମତାମତ ପାଇଲେ ଏବଂ ଆପଣ ପେଟିକାର କିପରି ବ୍ୟବହାର କଲେ ତାହାଜାଣିଲେ *ପାନ୍ ଆପ୍* ଖୁସୀ ହେବ । ଆସନ୍ତୁ, ପୃଥିବୀକୁ ବିଷାକ୍ତ କୀଟନାଶକ କବଳରୁ ମୁକ୍ତ କରିବା ପାଇଁ ଏକାଠି ମିଶି କାମକରିବା ।



Digitized by srujanika@gmail.com

# କୃତଜ୍ଞତା

ଏହି ପ୍ରକାଶନଟି ଯେଉଁମାନଙ୍କ ବିନା ସହାୟତାରେ ସମ୍ଭବ ହୋଇପାରି ନଥା'ନ୍ତା, ସେମାନେ ହେଲେ

- ଏସିଆନ, କାନାଡା
- କୁସୋ, କାନାଡା
- ଇଜେଡ଼ଇ, ଜର୍ମାନି
- ହିଭୋସ୍, ନେଦରଲାଣ୍ଡସ୍
- ନୋଭିବ୍, ନେଦରଲାଣ୍ଡସ୍

ଏହି ପେଟିକା ପାଇଁ ବିଭିନ୍ନ ଉତ୍ସରୁ ତଥ୍ୟସବୁ ଅଣାଯାଇଛି । କୀଟନାଶକ ଶିକ୍ଷା କେନ୍ଦ୍ରର ମେରିଅନ୍ ମୋସେସ୍‌ଙ୍କ ପାଖରେ ଆମେ ବିଶେଷ କୃତଜ୍ଞ । କାରଣ ତାଙ୍କର ପୁସ୍ତକ **"ହାର୍ଭେଷ୍ଟ ଅଫ୍ ସୋରେ - ଫାର୍ମ ୱାର୍କରସ ଆଣ୍ଡ ପେଷ୍ଟିସାଇଡସ୍" ଭାଗ-୧ ଓ ୨** ଏହି ପେଟିକା ପ୍ରସ୍ତୁତିରେ ବେଶୀ ସାହାଯ୍ୟ କରିଛି ।

ମୁଖ୍ୟ ଲେଖକ: ରୋମେଓ କୁଇଜାନୋ ଓ ସରୋଜିନି ଭି. ରେଙ୍ଗମ୍

ସମ୍ପାଦନା: ରୋନାଲ୍ଡ ମେକଫାର୍ଲେନ୍

ସମ୍ପାଦନା ମଣ୍ଡଳୀ: ଇରେନ ଫର୍ଣ୍ଣାଣ୍ଡେଜ୍, ଦେୟାମାରି ଏମ୍. ଆନ୍ଥୋନୀ, ଲିନ୍ ରେଡୋବଲ୍, ବେର୍ଟି ଷ୍ଟିଭେନ୍, ଅଗସ୍ ସୁଗିଆର୍ଟୋଟୋ, ଲଲିତ୍ ସୁପ୍ଲିଡୋ ଓ ୱୋର୍‌ସୋନେ

ଅଙ୍ଗସଜ୍ଜା ଓ ପରିଯୋଜନା: ୟାନେସ୍ ଗୋବିନ୍ଦରାଜ୍

ଚିତ୍ର: ଆଲାନ୍ ଉଙ୍ଗ

ବିଶେଷ କୃତଜ୍ଞତା: ଜେନିଫର୍ ମୋରିନ୍ ଏବଂ ଗ୍ରେଗ୍ ଷ୍ଟ୍ରଙ୍କଙ୍କୁ ବିଶେଷ ଧନ୍ୟବାଦ । କାରଣ ସେ ସିପାକ୍‌ର ଅନ୍ୟାନ୍ୟ ପେଟିକା ପ୍ରସ୍ତୁତି ତଥା ଏହାର ଆରମ୍ଭ ଦିନରେ ଦିଗ୍‌ଦର୍ଶନ ଦେଇଛନ୍ତି ।

ଏହି ପ୍ରକାଶନଟି ବର୍ଣ୍ଣାଡୋ କାଲିବୋଙ୍କ ସ୍ମୃତିରେ ଉତ୍ସର୍ଗୀକୃତ । ସେ ୧୯୬୭ - ୧୯୮୮ ପର୍ଯ୍ୟନ୍ତ ଆଇ.ଆର୍.ଆର୍.ଆଇ.ରେ ନିଯୁକ୍ତ ହୋଇଥିଲେ ଏବଂ ରାସାୟନିକଗୁଡ଼ିକର ଦାୟିତ୍ୱରେ ଥିଲେ । ୧୯୮୭ରେ ତାଙ୍କୁ ପାର୍କିନ୍‌ସନ୍‌ସ୍ ରୋଗ ହୋଇଥିବାର ଜଣା ପଡ଼ିଲା ଏବଂ ତା'ର ପରବର୍ଷ ସେ ଚାକିରୀରୁ ଅବ୍ୟାହତୀ ନେଲେ । ସେ ଏହି ରୋଗ ଯୋଗୁଁ ୧୯୯୯ ସେପ୍‌ଟେମ୍ବର ପ୍ରଥମ ସପ୍ତାହରେ ମୃତ୍ୟୁବରଣ କଲେ ।

ପ୍ରକାଶନ: ପେଷ୍ଟିସାଇଡ୍ ଆକ୍ସନ ନେଟୱର୍କ ଏସିଆ ଆଣ୍ଡ ଦି ପାସିଫିକ୍ (ପାନ୍ ଆପ୍)

ପେନାଙ୍ଗ, ନଭେମ୍ବର ୧୯୯୯

## ଓଡ଼ିଆ ସଂସ୍କରଣ

ଭାଷାନ୍ତର ଓ ପ୍ରାକ୍-ମୁଦ୍ରଣ ପ୍ରସ୍ତୁତି: ଜୀବନ କୁମାର ପଣ୍ଡା, ପୁଷ୍ପଶ୍ରୀ ପଟ୍ଟନାୟକ ଏବଂ ସୃଜନିକା କର୍ମୀଦଳ

ପ୍ରକାଶନ: ଲିଭିଙ୍ଗ ଫାର୍ମସ୍/ଡିଆର୍‌ସିଏସ୍‌ସି - ଭୁବନେଶ୍ୱର, ପ୍ଲଟ୍ ନଂ-୧୧୮୧/୨୧୪୬, ରତ୍ନାକରବାଗ-୨, ଟଙ୍କପାଣିରୋଡ୍, ଭୁବନେଶ୍ୱର - ୭୫୧ ୦୧୮, ଦୂରଭାଷ: (୦୬୭୪) ୨୪୩୦୧୭୬

ପ୍ରଥମ ସଂସ୍କରଣ: ଅକ୍ଟୋବର ୨୦୦୭

**ମୂଲ୍ୟ: ୬୫.୦୦**

ସହାୟତା: ପାନ୍ ଆପ୍ ଓ ଆକ୍ସନ ଏଡ୍



Digitized by srujanika@gmail.com

# କୀଟନାଶକର ସ୍ୱାସ୍ଥ୍ୟଗତ ପ୍ରଭାବ

ଡିସେମ୍ବର ୯, ୧୯୯୬ ସକାଳୁ ସକାଳୁ ମଲିତା, ଡାଭାଓ ଡେଲ ସୁର, ଫିଲିପାଇନ୍‌ସର କର୍ମୀମାନେ ତାଙ୍କ କାକାଓ ବଗିଚାରେ ଗୋଟିଏ ନୂଆ ପ୍ରକାର କୀଟନାଶକ ପ୍ରୟୋଗ କଲେ । ସେମାନଙ୍କ କହିବା ଅନୁସାରେ ସେଠିକାର କୀଟସବୁ ଅନ୍ୟାନ୍ୟ କୀଟନାଶକ ପ୍ରତି ପ୍ରତିରୋଧୀ ହୋଇ ସାରିଥିଲେ । ସେମାନେ ଭାବିଲେ ଏବେ ଅଧିକ ଶକ୍ତିଶାଳୀ ରାସାୟନିକ ପ୍ରୟୋଗ କରିବା ଠିକ୍ ହେବ ।

ସକାଳ ୭ଟାରେ ୨୨ ଜଣ କର୍ମୀ ସିଞ୍ଚନ ଆରମ୍ଭ କଲେ । ସେମାନେ ଜାଣିନଥିଲେ ଯେ ରାସାୟନିକଟି ସ୍ନାୟୁତନ୍ତ୍ରକୁ ପ୍ରଭାବିତ କରୁଥିବା ବାଷ୍ପ ଭଳି ଏକ ବିପଦଜନକ କୀଟନାଶକ । ଘଣ୍ଟାଏ ପରେ ଜଣେ କର୍ମୀ ଅଚେତ ହୋଇଗଲା । ତିନି ଘଣ୍ଟା ପରେ ଅନ୍ୟମାନଙ୍କୁ ବାନ୍ତି ଲାଗିଲା, ବାନ୍ତି ହେଲା, ମୁଣ୍ଡ ବୁଲେଇଲା, ଆଖି ଜାଲୁଜାଲୁଆ ଲାଗିଲା । ଅନେକେ ଚେତା ହରାଇ ପଡ଼ିଲେ । ସମସ୍ତଙ୍କୁ ଡାକ୍ତରଖାନାକୁ ଅଣାଗଲା ।

ସେହି ଏକାଦିନ ଆଉ ଗୋଟିଏ ଦଳ ଦିନ ୧୦ଟା ବେଳେ ଏହି କୀଟନାଶକ ସିଞ୍ଚନ ଆରମ୍ଭ କଲେ । ପ୍ରଥମ ଦଳକୁ କ'ଣ ହୋଇଛି ସେ ବିଷୟରେ ସେମାନେ କିଛି ଜାଣିନଥିଲେ । କିଛି ଘଣ୍ଟା ଭିତରେ ସେମାନେ ମଧ୍ୟ ସେହି ଏକା ଲକ୍ଷଣ ଅନୁଭବ କଲେ । ସ୍ୱେଚ୍ଛାସେବୀ ଉଦ୍ଧାରକାରୀମାନେ ସେଠାକୁ ଗଲେ ଏବଂ ସେମାନେ ମଧ୍ୟ ସେହି ବିଷ ଦ୍ୱାରା ପ୍ରଭାବିତ ହେଲେ ।

ସେହିଦିନ ମୋଟରେ ୫୨ ଜଣ କୀଟନାଶକ ବିଷ ପ୍ରଭାବରେ ଡାକ୍ତରଖାନାରେ ଭର୍ତ୍ତି ହେଲେ ଏବଂ ସେଥିରୁ ୩୫ ଜଣ ଗୁରୁତର ଭାବରେ ଆକ୍ରାନ୍ତ ଥିଲେ ।





Digitized by srujanika@gmail.com

# କୀଟନାଶକ ସମସ୍ତଙ୍କୁ ପ୍ରଭାବିତ କରେ

**ଆପଣଙ୍କ ସ୍ୱାସ୍ଥ୍ୟ, ଆପଣଙ୍କ ପରିବାର ସ୍ୱାସ୍ଥ୍ୟ, ଆପଣଙ୍କ ଗୋଷ୍ଠୀର ସ୍ୱାସ୍ଥ୍ୟ ।**

ପୃଥିବୀ ସାରା କୀଟନାଶକ ବ୍ୟବହାର କରୁଥିବା (ବା ବ୍ୟବହାର କରୁଥିବା ଲୋକର ପାଖରେ ରହୁଥିବା) ଚାଷୀ ଏବଂ ତାଙ୍କ ପରିବାର ପାଇଁ ପ୍ରଥମ ପ୍ରଶ୍ନ ହେଉଛି ସେମାନଙ୍କ ସ୍ୱାସ୍ଥ୍ୟ ଉପରେ କ'ଣ ପ୍ରଭାବ ପଡ଼ିବ ।

ଏହା କେବଳ ସିଞ୍ଚନ କରିଥିବା ଚାଷୀ ବା ଶ୍ରମିକର ସ୍ୱାସ୍ଥ୍ୟ ସହ ଯୋଡ଼ା ହେବା ଜରୁରୀ ନୁହେଁ । କୀଟନାଶକ ବ୍ୟବହାର ହେଉଥିବା ଅଞ୍ଚଳରେ ରହୁଥିବା ଲୋକ ତଥା ଚାଷୀର ପରିବାରର ଅନ୍ୟମାନଙ୍କୁ ମଧ୍ୟ ଏହା ପ୍ରଭାବିତ କରିଥାଏ । ମା'ପେଟରେ ଥିବା ଶିଶୁ ମଧ୍ୟ ଏହା ଦ୍ୱାରା ପ୍ରଭାବିତ ହୋଇଥାଏ । ପଶୁ ସମ୍ପଦ, ମାଛ ଓ ପକ୍ଷୀ ମଧ୍ୟ କୀଟନାଶକର ପ୍ରଭାବରୁ ବଞ୍ଚିପାରନ୍ତି ନାହିଁ । ଏହା ପୂରା ଗୋଷ୍ଠୀକୁ ପ୍ରଭାବିତ କରେ, କାରଣ ସେ ଅଞ୍ଚଳର ସବୁ ପାଣି ବା ଖାଦ୍ୟ ଏହା ଦ୍ୱାରା ସଂକ୍ରମିତ ହୋଇଥାଏ ।





**ଭୁଲ ସୂଚନା ନରହତ୍ୟା କରିପାରେ!**

କୀଟନାଶକ ଉତ୍ପାଦକମାନେ "କୀଟନାଶକର ନିରାପଦ ବ୍ୟବହାର" ବିଷୟରେ କୁହନ୍ତି ବା "ପରିବେଶ ପ୍ରତି ଅନୁକୂଳ" ବୋଲି ବିଜ୍ଞାପନ କରିଥା'ନ୍ତି ।

ଏହି ଦୁଇଟି ଯାକ କଥା ପୂରା ମିଛ । କାରଣ କୀଟନାଶକ ମାତ୍ରେ ହିଁ ବିଷ । ଏହାର ବ୍ୟବହାର କେବେ ବି ବିପଦମୁକ୍ତ ହୋଇପାରିବ ନାହିଁ ।

କୀଟନାଶକ ଜୀବଙ୍କୁ ମାରି ପକାଏ ଏବଂ ଅବଶିଷ୍ଟ ଅଂଶ ମାଟି ଓ ପାଣିକୁ ଦୂଷିତ କରିଥାଏ - ତାହା କେବେ ବି ପରିବେଶ ପ୍ରତି ଅନୁକୂଳ ହୋଇପାରିବ ନାହିଁ ।



Digitized by srujanika@gmail.com

**ଅନେକଲୋକ ଅନୁଭବ କରିପାରନ୍ତି ନାହିଁ ଯେ କୀଟନାଶକ ସେମାନଙ୍କ ପାଇଁ ବିଷାକ୍ତ ।**

କାରଣ କୀଟନାଶକ ବିଷର ଅନେକ ଲକ୍ଷଣ ଅନ୍ୟାନ୍ୟ ସ୍ୱାସ୍ଥ୍ୟ ସମସ୍ୟା ପରି ଜଣାପଡ଼େ – ଉଦାହରଣ ସ୍ୱରୂପ, ଚମ ଫାଟିଯିବା ଏବଂ ମୁଣ୍ଡ ବୁଲେଇହେବା । ଲୋକମାନେ ଅନେକ ସମୟରେ ଜାଣିପାରନ୍ତି ନାହିଁ ଯେ ସେମାନେ ବିଷ ଦ୍ୱାରା ଆକ୍ରାନ୍ତ ହୋଇସାରିଲେଣି ।

ଅନେକଗୁଡ଼ିଏ ଅସୁବିଧା ସାଙ୍ଗେ ସାଙ୍ଗେ ଦେଖାଯାଏ ନାହିଁ । ଯଥା, ସ୍ନାୟବିକ ଅସୁବିଧା ବା କର୍କଟ ରୋଗ । ଲୋକ ଜାଣିପାରନ୍ତି ନାହିଁ ଯେ ଏହି ରୋଗସବୁ କୀଟନାଶକ ଯୋଗୁଁ ହିଁ ହେଉଛି ।

ଅଧିକାଂଶ ଡାକ୍ତର କୀଟନାଶକ ସମ୍ପର୍କିତ ରୋଗକୁ ଚିହ୍ନିବା ପାଇଁ ଉପଯୁକ୍ତ ତାଲିମ ପାଇନାହାନ୍ତି ବା ଫାର୍ମ ପରିଚାଳକଙ୍କ ଚାପରେ ସେମାନଙ୍କୁ ଠିକ୍ ଭାବରେ ପରୀକ୍ଷା କରାଯାଏ ନାହିଁ ।

କୀଟନାଶକ ସଂସ୍ପର୍ଶରେ ଆସିଲା ପରେ ଯଦି ଆପଣଙ୍କୁ ଭଲ ଲାଗୁନାହିଁ, ତେବେ ଆପଣ କୀଟନାଶକ ବିଷ ପ୍ରଭାବରେ ପ୍ରଭାବିତ ହୋଇଥିବାର ସମ୍ଭାବନା ଅଛି । ଯଦି ଆପଣ ନିୟମିତ ଏହା ସଂସ୍ପର୍ଶରେ ଆସନ୍ତି, ତେବେ ଆପଣ ଗୁରୁତର ସ୍ୱାସ୍ଥ୍ୟ ଅସୁବିଧାରେ ପଡ଼ିପାରନ୍ତି ।

ଅନ୍ୟମାନଙ୍କ କଥାରେ ଭୁଲନ୍ତୁ ନାହିଁ । ଫାର୍ମ ପରିଚାଳକ, ସ୍ୱାମୀ ବା ସ୍ୱାସ୍ଥ୍ୟକର୍ମୀ – ସେମାନେ କହିପାରନ୍ତି ଦେହରେ କିଛି ଅସୁବିଧା ନାହିଁ । ଏହା କେବଳ ଟାଣ ଖରା ବା ଖରାପ ଖାଦ୍ୟ ଯୋଗୁ କିମ୍ବା ଅନ୍ୟ କିଛି ସାଧାରଣ ଅସୁବିଧା ।

ଆପଣଙ୍କ ଦେହ ଜଣାଉଥିବା ବାର୍ତ୍ତାକୁ ବିଶ୍ୱାସ କରିବା ଶିଖନ୍ତୁ ।

**ମନେରଖନ୍ତୁ! ଆପଣ ହିଁ ଆପଣଙ୍କ ଶରୀରକୁ ସବୁଠାରୁ ଭଲ ଭାବରେ ଜାଣନ୍ତି ।**



Digitized by srujanika@gmail.com

* **ଚାଷୀ ଓ ଶ୍ରମିକମାନେ ନିୟମିତ କୀଟନାଶକର ସଂସ୍ପର୍ଶରେ ଆସନ୍ତି ।**

ବିଲ୍‌କିସ୍ ତିନିମାସ ଗର୍ଭବତୀ ଥିବା ଜଣେ ମହିଳା ଚାଷୀ । ତା' ସ୍ୱାମୀ କୀଟନାଶକ ସିଞ୍ଚନ କରିବା ସମୟରେ ସେ କପା ତୋଳିଥାଏ । ସେ ଖାଲି ପାଦରେ ଥାଏ ଏବଂ କୌଣସି ସୁରକ୍ଷା ପୋଷାକ ବ୍ୟବହାର କରେ ନାହିଁ । ଜମିରେ କାମ ସାରିବା ପରେ ବିଲ୍‌କିସ୍ ପଶୁଙ୍କୁ ଖାଇବାକୁ ଦିଏ । ତାପରେ ବିଲରେ ପିନ୍ଧିଥିବା ଲୁଗାକୁ ବଦଳାଇ ପରଦିନ ବ୍ୟବହାର ପାଇଁ ରଖିଦିଏ । ପରଦିନ ପୁଣି ନିଜ ଜମି କାମରେ ସେ ଲାଗିଯାଏ । ଯେତେବେଳେ ତାକୁ ମୁଣ୍ଡ ବୁଲେଇହେଲା ପରି ଲାଗେ ସେ ୧୫ ମିନିଟ ପାଇଁ ବିଶ୍ରାମ ନିଏ ଏବଂ ପରେ ପୁଣି କାମରେ ଲାଗେ । ସେ କହେ, "କପା ତୋଳିବା ପାଇଁ ଆମେ ଯେବେ ଜମିରେ ପଶୁ, ପ୍ରଥମେ ବେଶ୍ ଅଣନିଶ୍ୱାସୀ ଲାଗେ । ଅବଶ୍ୟ ସାରା ଗାଁ କୀଟନାଶକର ତୀବ୍ର ଗନ୍ଧରେ ଭରି ରହିଥାଏ ।"



କାର୍ଲୋସ ୧୯୭୭ରୁ ୧୯୯୦ ଯାଏଁ ଏକ ଆନ୍ତର୍ଜାତୀୟ ଗବେଷଣା କେନ୍ଦ୍ରରେ କୃଷିଶ୍ରମିକ ଭାବରେ କାମ କରୁଥିଲା । ଏହି ସମୟରେ ସେ ବହୁ ପ୍ରକାରର କୀଟନାଶକ ସଂସ୍ପର୍ଶରେ ଆସିଥିଲା । ତା'ର ରୋଗକୁ ରକ୍ତ କର୍କଟ ବୋଲି ଚିହ୍ନଟ କରାଗଲା ଏବଂ ଏହା ତା' କାମ ଯୋଗୁଁ ଆସିଛି ବୋଲି ପ୍ରମାଣପତ୍ର ଦିଆଗଲା । ସେ ଜାନୁଆରୀ ୨୩, ୧୯୯୭ରେ ମାତ୍ର ୩୮ ବର୍ଷ ବୟସରେ ସ୍ତ୍ରୀ ଓ ଦୁଇ ପିଲାଙ୍କୁ ଛାଡ଼ି ଆରପାରିକୁ ଚାଲିଗଲା ।



**ପ୍ରତିବର୍ଷ ପ୍ରାୟ ୨୫ ନିୟୁତ ଶ୍ରମିକ କୀଟନାଶକ ବିଷରେ ଆକ୍ରାନ୍ତ ହୋଇଥାନ୍ତି ।**



Digitized by srujanika@gmail.com

• ପିଲାମାନେ ବି କୀଟନାଶକ ସଂସ୍ପର୍ଶରେ ଆସୁଛନ୍ତି

**"କ'ଣ କରିବାକୁ ହେବ ସେ ଦିଗରେ ଆମର କୌଣସି ଧାରଣା ନଥିଲା", କାନ୍ଦି କାନ୍ଦି ଗାଁର ଜଣେ ସ୍ତ୍ରୀ ଲୋକ କହିଲା ।**

୧୯୯୯ ମସିହା ଅକ୍ଟୋବର ୨୨ ତାରିଖ ଦିନ ପେରୁର ଗୋଟିଏ ଗାଁରେ ୬୦ ଜଣ ଛାତ୍ରଛାତ୍ରୀ ଜଳଖିଆ ଖାଇବାକୁ ବସିଲେ । ଅଧଘଣ୍ଟା ପରେ କିଛି ପିଲାଙ୍କ ପେଟ କାଟିଲା । ସେମାନେ ବାନ୍ତି କଲେ ଏବଂ ସ୍କୁଲ ଚାରିପଟେ ଅଚେତ ହୋଇ ପଡ଼ିଗଲେ । ସେମାନେ ପେଟକୁ ଚିପି ଧରି ଚିତ୍କାର କରିବା ସହ ବାନ୍ତି କରୁଥିଲେ । କେତେ ଜଣ ମରିଗଲେ ଏବଂ ଅନ୍ୟମାନେ ସ୍କୁଲ କୋଠରୀରେ ଓ ଘାସ ଉପରେ ଯନ୍ତ୍ରଣାରେ ଛଟପଟ ହେଉଥିଲେ । ସମସ୍ତଙ୍କୁ ଡାକ୍ତରଖାନା ନିଆଗଲା । ୨୪ ଜଣ ପିଲା ମରିଗଲେ । ଡାକ୍ତରମାନେ ଅଚେତ ହୋଇ ପଡ଼ିଥିବା ଅନ୍ୟ ୨୧ ଜଣ ପିଲାଙ୍କୁ ବଞ୍ଚେଇବାକୁ ସବୁପ୍ରକାର ଉଦ୍ୟମ କଲେ । ଏମାନେ ସମସ୍ତେ ସ୍କୁଲରେ କ୍ଷୀର ଓ ଶସ୍ୟ ଖାଇଥିଲେ ।

ସ୍ଥାନୀୟ ପୋଲିସ ଓ ଡାକ୍ତର ପିଲାଙ୍କ ପେଟରେ କୀଟନାଶକ ଥିବାର ସୂଚନା ପାଇଥିଲେ । ପରେ ଜଣାପଡ଼ିଲା ଯେ ସ୍କୁଲରେ ଜଳଖିଆ ତିଆରି ପାଇଁ ଦିଆ ହୋଇଥିବା ଗୋଟିଏ କ୍ଷୀର ପ୍ୟାକେଟରେ ପାରାଥିଅନ୍ ନାମକ ଏକ କୀଟନାଶକ ମିଶିଥିଲା । ଏହା କୁକୁର ଓ ମୂଷା ମାରିବା ପାଇଁ ବ୍ୟବହୃତ ହୁଏ । ଏହା ଜଣେ ଚାଷୀଙ୍କ ଘର ଆଗରେ ପଡ଼ିଥିଲା । ପିଲାମାନେ ସ୍କୁଲକୁ ଯାଉଥିବା ସମୟରେ ଏହି ମୁଣିକୁ ଦେଖିଲେ ଏବଂ ଭାବିଲେ ଯେ ତାହା ତାଙ୍କ ଜଳଖିଆ ଜିନିଷ । ତେଣୁ ତାକୁ ନେଇ ସେମାନେ ସ୍କୁଲର ଜଳଖିଆରେ ମିଶାଇଦେଲେ ।





**ଦଶ ବର୍ଷର ବାଳକ ପ୍ରେମନାଥନ କହିଲା, "ମୁଁ ମୋ ମା'କୁ ସାହାଯ୍ୟ କରେ ।"**

ପ୍ରେମନାଥନ ପାଞ୍ଚ ଭାଇଭଉଣୀ ଓ ବାପାମାଆଙ୍କ ସହ ରହେ । ସେମାନେ ଗୋଟିଏ ଚାଷୀ ପରିବାର । ତା' ବାପାମା' ବିକ୍ରି କରିବା ପାଇଁ ପରିବା ଚାଷ କରନ୍ତି । ସେ ସ୍କୁଲରୁ ଫେରିବା ପରେ ଜମିରେ ସାହାଯ୍ୟ କରେ । ଅନେକ ସମୟରେ ଜମିରେ ପକାଇବା ପାଇଁ ସେ ପାଖ ଦୋକାନରୁ କୀଟନାଶକ କିଣି ଆଣେ । କୀଟନାଶକ ଡବାଗୁଡ଼ିକୁ ସେ କାନ୍ଧରେ ବୋହି ଘରକୁ ଆସେ । ଖାଲି ଡବାଗୁଡ଼ିକୁ ବଗିଚାରେ ଫୋପାଡ଼ି ଦିଆଯାଏ । ସେଗୁଡ଼ିକୁ ଆଣି ତା'ର ୬ ବର୍ଷର ଭାଇ ଓ ୭ ବର୍ଷ ବୟସର ଭଉଣୀ ସବୁବେଳେ ଖେଳନ୍ତି । ଥରେ ତା' ଭଉଣୀ ଡବା ଧରି ଖେଳିବା ପରେ ଅଚେତ ହୋଇଗଲା । ତାକୁ ସାଙ୍ଗେ ସାଙ୍ଗେ ଚିକିତ୍ସା ପାଇଁ ଡାକ୍ତର ପାଖକୁ ନିଆଗଲା । ସେ ଦିନେ ପରେ ଘରକୁ ଫେରିଲା ।



Digitized by srujanika@gmail.com

## କୀଟନାଶକ ଲୋକଙ୍କ ଦେହରେ ବିଷ ଚରାଏ କିପରି ?

### ଚମଡ଼ା ବାଟ ଦେଇ

କୀଟନାଶକ ସିଧାସଳଖ ଚମଡ଼ା ସଂସ୍ପର୍ଶରେ ଆସେ - କୀଟନାଶକ ଚାଷୀର ଲୁଗାରେ ବା ଦେହରେ ସିଧାସଳଖ ଢାଳିଗଲେ, ସିଞ୍ଚନର ଅଳ୍ପ ସମୟ ଭିତରେ ଫସଲକୁ ଛୁଇଁଲେ, ସିଞ୍ଚନ କଲାବେଳେ କୀଟନାଶକ ଦେହରେ ପଡ଼ିଲେ ବା ଲୁଗାରେ ଭେଦିଗଲେ, ଖାଲି ହାତରେ କୀଟନାଶକ ଗୋଳାଇଲେ, କୀଟନାଶକ ଲାଗିଥିବା ଲୁଗାପଟା ସଫା କଲେ ।

ଚାଷୀ ବା କୃଷିଶ୍ରମିକ ଦେହକୁ ମୁଖ୍ୟତଃ ଚମଡ଼ା ବାଟ ଦେଇ କୀଟନାଶକ ଆସିଥାଏ ।

### ନିଶ୍ୱାସ ବାଟ ଦେଇ

କୀଟନାଶକ ସିଞ୍ଚନ କରୁଥିବା ଚାଷୀ ବା ସିଞ୍ଚନ ହେଉଥିବା ଆଖପାଖରେ ରହୁଥିବା ଲୋକଙ୍କ ପାଇଁ ଏହା ଅତି ସାଧାରଣ ବାଟ । ମନେରଖିବା ଉଚିତ ଯେ କେତେକ ବିଷାକ୍ତ କୀଟନାଶକର କୌଣସି ଗନ୍ଧ ନାହିଁ ।

### ପାଟି ବାଟ ଦେଇ

କୌଣସି ଲୋକ ଦୁର୍ଘଟଣାବଶତଃ ବା ଜାଣିଶୁଣି କୀଟନାଶକ ପିଇଦେଲେ, କୀଟନାଶକ ପ୍ରଦୂଷିତ ଖାଦ୍ୟ ଖାଇଲେ ବା ପାଣି ପିଇଲେ, ଏହାର ବ୍ୟବହାର ପରେ ଠିକ ଭାବରେ ହାତକୁ ସଫା ନକରି ସେଇ ହାତରେ ଖାଇଲେ ତାହା ପାଟି ବାଟ ଦେଇ ଆମ ଦେହକୁ ପଶିଥାଏ ।




**ଦେହ ଭିତରକୁ କୀଟନାଶକ ଯାଏ କିପରି?**



Digitized by srujanika@gmail.com

## କୀଟନାଶକର ସ୍ୱାସ୍ଥ୍ୟ ପ୍ରତି ଗୁରୁତର ପ୍ରଭାବ

ସବୁ ପ୍ରକାରର କୀଟନାଶକ ଆପଣଙ୍କ ସ୍ୱାସ୍ଥ୍ୟ ପ୍ରତି କ୍ଷତିକାରକ । ବିଷର ଦୁଇ ପ୍ରକାର ପ୍ରଭାବ ରହିଛି - ସାଙ୍ଗେ ସାଙ୍ଗେ ଓ ଲମ୍ବା ସମୟ ।

**ସାଙ୍ଗେ ସାଙ୍ଗେ ପ୍ରଭାବ:** ବିଷର ପ୍ରଭାବ ସାଙ୍ଗେ ସାଙ୍ଗେ ଦେଖାଯାଏ ।

**ଦୀର୍ଘକାଳୀନ ବିଷ ପ୍ରଭାବ:** ବିଷର ପ୍ରଭାବ ସ୍ୱାସ୍ଥ୍ୟ ଉପରେ ଡେରିରେ ପଡ଼ିଥାଏ । ଅର୍ଥାତ ବିଷର ପ୍ରଭାବ ଆରମ୍ଭ ହେବାକୁ ଅଧିକ ସମୟ ଲାଗିଥାଏ । କୀଟନାଶକ ସଂସ୍ପର୍ଶରେ କେତେ ମାସ ବା ବର୍ଷ ଧରି ନ ଆସିଲେ ବିଷର ପ୍ରଭାବ ଜଣାପଡ଼େ ନାହିଁ ।

କେତୋଟି ଗୁରୁତର ପ୍ରଭାବ ଭିତରେ ରହିଛି:


ମୁଣ୍ଡବିନ୍ଧା


ମୁଣ୍ଡ ବୁଲେଇହେବା


ବାନ୍ତି ବାନ୍ତି ଲାଗିବା


ଛାତି କାଟିବା


ବାନ୍ତି ହେବା



ଚମଡ଼ା ଫଳିଯିବା


ମାଂସପେଶୀ ଦରଜ ହେବା


ଅଧିକ ଝାଳ ବାହାରିବା


ମାଂସପେଶୀ ଟାଣି ହେବା


ତରଳ ଝାଡ଼ା ହେବା


ନିଶ୍ୱାସ ନେବାରେ କଷ୍ଟ ହେବା


ମୃତ୍ୟୁ


ଝାପ୍ସା ଦେଖାଯିବା



Digitized by srujanika@gmail.com

• **ଗୁରୁତର କୀଟନାଶକ ବିଷ ପ୍ରଭାବର 'ସ୍ଥାନୀୟ ପ୍ରଭାବ' କ'ଣ ?**

ଦେହର ଯେଉଁ ଅଂଶ ସିଧାସଳଖ କୀଟନାଶକ ସଂସ୍ପର୍ଶରେ ଆସେ ସେଠାରେ ତା'ର ପ୍ରଭାବ ଢଣାପଡ଼େ । ଏହାକୁ ସ୍ଥାନୀୟ ପ୍ରଭାବ କୁହାଯାଏ ।

ଚମ ଶୁଖିଗଲା ଭଳି ଲାଗିବା, ପୋଡ଼ିବା, ଲାଲ ପଡ଼ିଯିବା ଓ ଆଖି, ନାକ, ଗଳା ଓ ଚମଡ଼ା କୁଣ୍ଡେଇ ହେବା, ଆଖିରୁ ପାଣି ଝରିବା ଓ କାଶ ହେବା ଆଦି ହେଉଛି ବିଷର ସ୍ଥାନୀୟ ପ୍ରଭାବର କିଛି ଉଦାହରଣ ।

ଚମଡ଼ା ଲାଲ ପଡ଼ିବା, କୁଣ୍ଡେଇ ହେବା, ପୋଡ଼ିବା, ଫଳିଯିବା, ଫୋଟକା ହେବା ଓ ବିବର୍ଣ୍ଣ ହେବା ଭଳି ସମସ୍ୟା ମଧ୍ୟ ହୋଇପାରେ । କୀଟନାଶକ ବିଷ ପ୍ରଭାବର ଗୋଟିଏ ସାଧାରଣ ଲକ୍ଷଣ ହେଉଛି ହାତ ଓ ପାଦ ନଖ ଗୁଡ଼ିକ କଳା ବା ନୀଳ ପଡ଼ିଯିବା । ଅତି ଖରାପ ଅବସ୍ଥାରେ ନଖଗୁଡ଼ିକ ବାହାରି ଆସେ ।

• **ତୀବ୍ର କୀଟନାଶକ ବିଷ ପ୍ରଭାବର 'ଦୈହିକ ପ୍ରଭାବ' କ'ଣ ?**

କୀଟନାଶକ ଦେହ ଭିତରକୁ ପଶି ଦେହର ପୂରା ବ୍ୟବସ୍ଥା ଉପରେ ପ୍ରଭାବ ପକାଇଲେ, ତାକୁ କୀଟନାଶକ ବିଷର ଦୈହିକ ପ୍ରଭାବ କୁହାଯାଏ ।

କୀଟନାଶକ ରକ୍ତ ମାଧ୍ୟମରେ ଦେହର ସବୁ ଅଂଶରେ ପହଞ୍ଚେ ଏବଂ ଏହା ଆଖି, ହୃତପିଣ୍ଡ, ଫୁସ୍‌ଫୁସ୍, ପାକସ୍ଥଳୀ, ଅନ୍ତନଳୀ, ଯକୃତ, ବୃକକ୍, ମାଂସପେଶୀ, ମସ୍ତିଷ୍କ ଓ ସ୍ନାୟୁକୁ ପ୍ରଭାବିତ କରିଥାଏ ।

ବିଷ କେତେ ଶୀଘ୍ର କାମ କରୁଛି ଏବଂ ଲକ୍ଷଣ ଦେଖାଯାଉଛି ତାହା ରାସାୟନିକର ପ୍ରକାର, କେତେ ସମୟ ଏହା ମଣିଷର ସଂସ୍ପର୍ଶରେ ଆସିଛି ଓ ବିଷର ତୀବ୍ରତା ଉପରେ ନିର୍ଭର କରିବ ।






Digitized by srujanika@gmail.com

## କୀଟନାଶକ ଚମଡ଼ା ଉପରେ ଗୁରୁତର ପ୍ରଭାବ ପକାଏ କି ?

**ହଁ।**

- **କୃଷି ଶ୍ରମିକଙ୍କ ଚମଡ଼ାରେ କେଉଁ କୀଟନାଶକ ସମସ୍ୟା ସୃଷ୍ଟି କରିଥାଏ?**

ଅନ୍ୟ ପ୍ରକାର କୀଟନାଶକର ଅପେକ୍ଷା କବକନାଶୀ ଚମଡ଼ାରେ ଅଧିକ ସମସ୍ୟା ସୃଷ୍ଟି କରେ । ଅବଶ୍ୟ ତୃଣକନାଶୀ, କୀଟନାଶକ, ଧୂଆଁକାରୀଗୁଡ଼ିକ ମଧ୍ୟ ଚମଡ଼ାରେ ସମସ୍ୟା କରେ ।

କୀଟନାଶକ ଚମଡ଼ା ବାଟ ଦେଇ ଦେହକୁ ଯାଇଥାଏ । ବିଷାକ୍ତ ରାସାୟନିକ ଯୋଗୁଁ ଚମଡ଼ା ନଷ୍ଟ ହୋଇଯାଏ ।

ବେଳେ ବେଳେ କୀଟନାଶକ ବା ସେଥିରେ ଥିବା କୌଣସି ଉପାଦାନ ଦେହରେ ଆଲର୍ଜି ସୃଷ୍ଟି କରିପାରେ । ଖୁବ୍ କମ ପରିମାଣ ରାସାୟନିକ ସଂସ୍ପର୍ଶରେ ଆସିଲେ ମଧ୍ୟ ଚମଡ଼ାରେ ବହୁତ ଅଧିକ ପ୍ରଭାବ ପଡ଼ିଥାଏ ।

ଚମଡ଼ାର ପ୍ରଭାବିତ ଅଂଶ ଉପରେ ସୂର୍ଯ୍ୟକିରଣ ପଡ଼ିଲେ ଅବସ୍ଥା ଆହୁରି ଖରାପ ହୋଇଥାଏ ।

| କବକନାଶୀ | ତୃଣକନାଶୀ | କୀଟନାଶୀ | ଧୂଆଁକାରୀ |
|---|---|---|---|
| ବେନୋମାଇଲ୍ | ୨,୪-ଡି | ଆର୍ସେନିକ୍ | ଡାଇଜୋମେଟ୍ |
| କାପ୍ଟୋଫଲ୍ | ଆଲାକ୍ଲୋର୍ | କ୍ରିଓଲାଇଟ୍ | ଡାଇକ୍ଲୋରୋପ୍ରୋପେନ୍ |
| କାପ୍ଟାନ୍ | ଆଲିଡୋକ୍ଲୋର୍ | ଡାଇଏନୋକ୍ଲୋର୍ | ଏଥିଲିନ୍ ଅକ୍ସାଇଡ୍ |
| କ୍ଲୋରୋଥାଲୋନିଲ୍ | ଆମିଟ୍ରୋଲ୍ | ଡାଇନାଇଟ୍ରୋଫେନଲ୍ | ମେଟାମ ସୋଡ଼ିଅମ |
| କପର ସଲ୍ଫେଟ୍ | ଆଟ୍ରାଜିନ୍ | ମାଲାଥିଅନ୍ | ମିଥାଇଲ୍ ବ୍ରୋମାଇଡ |
| ଡାଇକ୍ଲୋରାନ୍(ଡିସିଏନ୍ଏ) | ବାର୍ବାନ୍ | ନାଲେଡ୍ | |
| ଡାଇନୋବୁଟୋନ୍ | ଡାଇକ୍ୱାଟ୍ | ପାରାଥିଅନ୍ | |
| ଡାଇନୋକ୍ୟାପ୍ | ଗ୍ଲାଇଫସେଟ୍ | ପାଇରେଥ୍ରିନ୍ସ୍ | |
| ଡିଟାଲିମ୍ଫସ୍ | ଏମ୍ସିପିଏ | | |
| ଡାଇଥିଆନନ୍ | ନାଇଟ୍ରାଲିନ୍ | | |
| ଡାଇରିନ୍ | ପାରାକ୍ୱାଟ୍ | | |
| ଫଲ୍ପେଟ୍ | ଫେନ୍ମେଡିଫାମ୍ | | |
| ଏଚ୍ସିବି | ପ୍ରୋପାକ୍ଲୋର୍ | | |
| ମାନେବ୍ | ପାଇରାଜୋନ୍ | | |
| ମାନ୍କୋଜେବ୍ | | | |
| ଅର୍ଗାନୋଟିନ୍ସ୍ | | | |
| ପିସିଏନ୍ବି | | | |
| ପିସିବି | | | |
| ସଲ୍ଫର୍ | | | |
| ଥାଓଫେନେଟ୍ | | | |
| ଥାଇରମ୍ | | | |
| ଟ୍ରାଇଫିନାଇଲ୍ଟିନ୍ | | | |
| ଜିନେବ | | | |

କୌଣସି କୀଟନାଶକ ଏହି ତାଲିକାରେ ନଥିବାର ଅର୍ଥ ନୁହେଁ ଯେ ତାହା ସୁରକ୍ଷିତ । ଏସବୁ ରାସାୟନିକ ପ୍ରତି ଆମ ଦେହ ଅଲଗା ଭାବରେ ପ୍ରତିକ୍ରିୟା ଦେଖାଇଥାଏ । ଅନ୍ୟମାନଙ୍କ ତୁଳନାରେ କିଛି ଲୋକଙ୍କର ଅଧିକ ପ୍ରଭାବ ପଡ଼ିଥାଏ ।



Digitized by srujanika@gmail.com

• **କୀଟନାଶକ ଯୋଗୁ ଚମଡ଼ା ଫଳିଯାଇଛି ବୋଲି କିପରି ଜାଣିବା ?**

ଶ୍ରମିକମାନେ ଅନେକଗୁଡ଼ିଏ କୀଟନାଶକ ବ୍ୟବହାର କରିଥା'ନ୍ତି । ତେଣୁ କେଉଁ କୀଟନାଶକ ଯୋଗୁଁ ଚମଡ଼ା ଫଳିଯାଇଛି ଜାଣିବା କଷ୍ଟକର ହୋଇଥାଏ ।

ବେଳେବେଳେ କୀଟନାଶକ ଛଡ଼ା ଅଲଗା ଜିନିଷ ଯୋଗୁଁ ମଧ୍ୟ ଚମଡ଼ା ଫଳି ଯାଇଥାଏ: ଫସଲ ସଂସ୍ପର୍ଶରେ ଆସିବା, ପୋକ କାମୁଡ଼ିବା, ଅନ୍ୟ ପଦାର୍ଥ ପ୍ରତି ଆଲର୍ଜି ହେବା କିମ୍ବା ଚମଡ଼ାରେ କିଛି ସଂକ୍ରମଣ ଯୋଗୁ ମଧ୍ୟ ଏପରି ହୋଇପାରେ ।

କିଛି ସ୍ୱତନ୍ତ୍ର ପରୀକ୍ଷା କରି ଚମଡ଼ା ଫଳିବାର କାରଣ ଜାଣିହୁଏ । କିନ୍ତୁ ଏପ୍ରକାର ପରୀକ୍ଷା ଚାଷୀ ବା ଶ୍ରମିକଙ୍କୁ ମିଳିନଥାଏ । ଯଦି କୀଟନାଶକ ସଂସ୍ପର୍ଶରେ ଆସିବା ବନ୍ଦ କରିଦେଲେ ଫୁଲା କମିଯାଉଛି, ତେବେ ଏହା କୀଟନାଶକ ଯୋଗୁଁ ହିଁ ହେଉଥିଲା ।



ଚମଡ଼ା ଫଳିଯିବା



Digitized by srujanika@gmail.com

. . . ସ୍ନାୟୁ ଉପରେ ?

କୃଷିରେ ବ୍ୟବହାର ହେଉଥିବା ଅଧିକାଂଶ କୀଟନାଶକ ମସ୍ତିଷ୍କ ଓ ସ୍ନାୟୁ ପ୍ରତି ବହୁତ କ୍ଷତିକାରକ ।

ସ୍ନାୟୁତନ୍ତ୍ରର କ୍ଷତି କରୁଥିବା ରାସାୟନିକକୁ **ସ୍ନାୟୁବିଷ** କୁହାଯାଏ ।

କୀଟନାଶକ ଦ୍ୱାରା ହେଉଥିବା ମସ୍ତିଷ୍କ ରୋଗର କେତେକ ଲକ୍ଷଣ ହେଉଛି: କିଛି ମନେ ନରହିବା, ଏକାଗ୍ରତା ନରହିବା, ବ୍ୟକ୍ତିତ୍ୱ ବଦଳିଯିବା, ପକ୍ଷାଘାତ, ହଠାତ କୌଣସି ରୋଗ ହେବା, ମୂର୍ଚ୍ଛା ହେବା ଏବଂ ଅଚେତନ ଅବସ୍ଥାରେ ରହିବା ।

. . . ଯକୃତ ଉପରେ ?

ଆମ ଶରୀରରେ ଯକୃତ ବିଷାକ୍ତ ରାସାୟନିକଗୁଡ଼ିକୁ ଭାଙ୍ଗି କମ୍ କ୍ଷତିକାରକ ପଦାର୍ଥରେ ପରିଣତ କରିଥାଏ । ତେଣୁ ଅନେକ ସମୟରେ ଯକୃତ ନିଜେ ଏହି କୀଟନାଶକ ଦ୍ୱାରା କ୍ଷତିଗ୍ରସ୍ତ ହୋଇଥାଏ । ଏହାଦ୍ୱାରା ଯକୃତ ପ୍ରଦାହ ହୋଇପାରେ ।

. . . ପାକସ୍ଥଳୀ ଉପରେ ?

ବାନ୍ତି ହେବା, ପେଟ କାଟିବା ଏବଂ ତରଳ ଝାଡ଼ା ହେବା ଆଦି କୀଟନାଶକ ବିଷ ପ୍ରଭାବର ସାଧାରଣ ଲକ୍ଷଣ । ବେଶୀ ଦିନ ଧରି କୀଟନାଶକ ସଂସ୍ପର୍ଶରେ ରହିଲେ ଗୁରୁତର ପାକସ୍ଥଳୀ ସମସ୍ୟା ଦେଖାଯାଇପାରେ । ବର୍ଷ ବର୍ଷ ଧରି କୀଟନାଶକ ନେଇ କାମ କରୁଥିବା ଲୋକମାନଙ୍କୁ ତାଙ୍କର ନିତିଦିନିଆ ଖାଦ୍ୟ ଖାଇବାରେ ମଧ୍ୟ କଷ୍ଟ ହୁଏ ।

ଦୁର୍ଘଟଣାବଶତଃ ବା ଜାଣିଶୁଣି କୀଟନାଶକ ଖାଇଦେଲେ ଏହା ପାକସ୍ଥଳୀର କାନ୍ଥକୁ ଖାଇଯାଇ ଗୁରୁତର କ୍ଷତି କରିଥାଏ ।






Digitized by srujanika@gmail.com

## . . ପ୍ରତିରକ୍ଷୀ ତନ୍ତ୍ର ଉପରେ ?

ଦେହର ପ୍ରତିରକ୍ଷୀ ତନ୍ତ୍ରରେ ହେଉଥିବା କୌଣସି ଅସୁବିଧା ହେଉଛି ଆଲର୍ଜି । ଏହା ହେଉଛି କୌଣସି ବାହ୍ୟ ପଦାର୍ଥ ପ୍ରତି ଆମ ଶରୀରର ପ୍ରତିକ୍ରିୟା । କୀଟନାଶକଗୁଡ଼ିକ ବିଭିନ୍ନ ପ୍ରକାରର ଆଲର୍ଜି ପ୍ରତିକ୍ରିୟା ସୃଷ୍ଟି କରିଥା'ନ୍ତି । ଅଲଗା ଅଲଗା ଲୋକ କୀଟନାଶକ ପ୍ରତି ବିଭିନ୍ନ ପ୍ରତିକ୍ରିୟା ଦେଖାଇଥା'ନ୍ତି ।

କେତେକ କୀଟନାଶକ ଦେହର ପ୍ରତିରକ୍ଷା ତନ୍ତ୍ରରେ ଅସୁବିଧା ସୃଷ୍ଟି କରିଥାଏ । କେତେକ କୀଟନାଶକ ଦେହର ରୋଗ ପ୍ରତିରୋଧ ଶକ୍ତିକୁ ଦୁର୍ବଳ କରିଦିଏ । ଫଳରେ ସହଜରେ ରୋଗ ଆକ୍ରମଣ କରିପାରେ । ଯଦି ଆଗରୁ କିଛି ସଂକ୍ରମଣ ରହିଥାଏ, ତେବେ ତାହା ଆହୁରି ଗୁରୁତର ହୋଇଯାଏ ଓ ତା'ର ଚିକିତ୍ସା ସେତିକି କଷ୍ଟ ହୋଇପଡ଼େ ।

## . . . ହରମୋନ୍ ସନ୍ତୁଳନ ଉପରେ ?

ପରୀକ୍ଷା କରି ଦେଖାଯାଇଛି ଯେ କୀଟନାଶକ ଦେହର ହରମୋନ୍ ତିଆରି ଉପରେ ପ୍ରଭାବ ପକାଇଥାଏ । ମସ୍ତିଷ୍କ, ଗଳଗଛି, ପରାଗଳଗ୍ରନ୍ଥି, ବୃକକ, ଅଧିବୃକକ, ଶୁକ୍ରାଶୟ ଓ ଡିମ୍ବାଶୟ ଆଦି ଅଙ୍ଗରେ ପ୍ରସ୍ତୁତ ହେଉଥିବା ରାସାୟନିକ ପଦାର୍ଥ ହେଉଛି ହରମୋନ୍ । ଏହା ଦେହର ଶାରିରୀକ କ୍ରିୟାକୁ ନିୟନ୍ତ୍ରଣ କରେ । କେତେକ କୀଟନାଶକ ପ୍ରଜନନ ହରମୋନ୍ ଉପରେ ପ୍ରଭାବ ପକାଇଥାଏ । ଫଳରେ ପୁରୁଷଙ୍କର ଶୁକ୍ରାଣୁ ସୃଷ୍ଟି କମିଯାଏ ଏବଂ ମହିଳାଙ୍କର ଡିମ୍ବାଣୁର ବୃଦ୍ଧିରେ ଅସ୍ୱାଭାବିକତା ଦେଖାଯାଇଥାଏ । କେତେକ କୀଟନାଶକ ଗଳଗ୍ରନ୍ଥିର ବୃଦ୍ଧି ଘଟାଇଥାଏ ଏବଂ ଏହା ଫଳରେ ଗଳଗ୍ରନ୍ଥି କର୍କଟ ରୋଗ ହୋଇପାରେ ।




ମଣିଷ ଦେହରେ ହରମୋନ୍‌ର ସୂଚନାକୁ ପଠାଉଥିବା ବା ଗ୍ରହଣ କରୁଥିବା କେତୋଟି ଗୁରୁତ୍ୱପୂର୍ଣ୍ଣ ଗ୍ରନ୍ଥି, ଅଙ୍ଗ ଓ ତନ୍ତ୍ର ।

ଚିତ୍ର: ଥେଓ କଲବର୍ଣ୍ଣ, ଡିଆନ୍ ଡୁମାନୋସ୍କି ଏବଂ ଜନ୍ ପିଟରସନ୍ ମିରସ, ଡୁଟୋନ୍‌ଙ୍କ ୧୯୯୬ର ପୁସ୍ତକ "ଆୱାର ଷ୍ଟୋଲେନ୍ ଫ୍ୟୁଚର: ଆର୍ ୱି ଥ୍ରେଟେନିଙ୍ଗ ଆୱାର ଫର୍ଟିଲିଟି, ଇଣ୍ଟେଲିଜେନ୍‌ସ ଆଣ୍ଡ ସର୍ଭାଇବାଲ୍? - ଏ ସାଇନ୍‌ଟିଫିକ୍ ଡିଟେକ୍ଟିଭ୍ ଷ୍ଟୋରି"ରୁ ନିଆଯାଇଛି ।



Digitized by srujanika@gmail.com

• **କୀଟନାଶକ ସଂସ୍ପର୍ଶରେ ଆସିଲେ ଗର୍ଭପାତ ହୁଏ କି ?**

ପରୀକ୍ଷା କରି ଦେଖାଯାଇଛି ଯେ ପରୀକ୍ଷାଗାରର ଜୀବମାନଙ୍କର କୀଟନାଶକର ପ୍ରଭାବ ଯୋଗୁ ଗର୍ଭପାତ ହୋଇଯାଉଛି । ତେଣୁ ମଣିଷ କ୍ଷେତ୍ରରେ ମଧ୍ୟ ସେହି ଏକା ସମସ୍ୟା ହୋଇପାରେ ।

ଗର୍ଭପାତ କରାଉଥିବା ବିଷକୁ **ଭୃଣବିଷ** କୁହାଯାଏ ।

ପରୀକ୍ଷାରୁ ଜଣାଯାଏ ଯେ ଗର୍ଭଧାରଣର ପ୍ରଥମ ମାସଗୁଡ଼ିକରେ କୀଟନାଶକ ସଂସ୍ପର୍ଶରେ ଆସିଲେ ଗର୍ଭପାତ ହୋଇପାରେ ।

ଆହୁରି ମଧ୍ୟ ମାଆ ଗର୍ଭବତୀ ହେବା ପୂର୍ବରୁ ବାପାମାଆ କୀଟନାଶକର ସଂସ୍ପର୍ଶରେ ଆସିଲେ ଗର୍ଭପାତ ହୋଇପାରେ ।



• **କୀଟନାଶକ ଯୋଗୁଁ ମଲାଛୁଆ ଜନ୍ମ ହୁଏ କି?**

ପରୀକ୍ଷାଗାରରେ ଜୀବଙ୍କ ଉପରେ ହୋଇଥିବା ପରୀକ୍ଷାରୁ ଜଣାଯାଇଛି ଯେ କୀଟନାଶକର ପ୍ରଭାବରୁ ସେମାନଙ୍କର ମଲାଛୁଆ ଜନ୍ମ ହୁଏ ।

ମଲାଛୁଆ ଜନ୍ମ କରାଉଥିବା କୀଟନାଶକକୁ **ଭୃଣବିଷ** କୁହାଯାଏ ।

ଗବେଷଣାରୁ ଜଣାଯାଇଛି ଯେ ଗର୍ଭବତୀ ଥିବା ସମୟରେ କୀଟନାଶକ ସଂସ୍ପର୍ଶରେ ଆସିଲେ ମଲାଛୁଆ ଜନ୍ମ ହୋଇପାରେ ।

ଗର୍ଭସଞ୍ଚାର ହେବା ପୂର୍ବରୁ ବାପାମାଆ କୀଟନାଶକ ସଂସ୍ପର୍ଶରେ ଆସିଲେ ମଲାଛୁଆ ହେବାର ସମ୍ଭାବନା ଅଛି ।







Digitized by srujanika@gmail.com

- **କୀଟନାଶକ ପୁରୁଷକୁ ବନ୍ଧ୍ୟା କରିପାରେ କି?**

**ହଁ!**

କେତେକ କୀଟନାଶକ ପୁରୁଷକୁ ବନ୍ଧ୍ୟା କରି ଦେଉଥିବା ଜଣାଯାଇଛି । ଏଗୁଡ଼ିକର ସଂସ୍ପର୍ଶରେ ଆସିଲେ ସେମାନଙ୍କର ଆଉ ଛୁଆ ହେଉନାହିଁ ।

କେତେକ କୀଟନାଶକ ପଶୁଙ୍କ କ୍ଷେତ୍ରରେ ମଧ୍ୟ ବନ୍ଧ୍ୟାତ୍ୱ ସୃଷ୍ଟି କରେ । କୀଟନାଶକ ଶୁକ୍ରାଣୁକୁ ମାରିଦେଇଥାଏ ବା ବିକୃତ କରିଦିଏ ।

ଶୁକ୍ରାଣୁ କୋଷଗୁଡ଼ିକୁ କ୍ଷତି କରୁଥିବା କୀଟନାଶକଗୁଡ଼ିକୁ **ଶୁକ୍ରାଣୁବିଷ** ବା ପ୍ରଜନନବିଷ କୁହାଯାଏ ।



- **କୀଟନାଶକ ସଂସ୍ପର୍ଶରେ ଆସୁଥିବା ସ୍ୱାମୀ କୀଟନାଶକ ସଂସ୍ପର୍ଶରେ ଆସୁ ନଥିବା ଗର୍ଭବତୀ ସ୍ତ୍ରୀ ଉପରେ କିଛି ପ୍ରଭାବ ପକାଏ କି ?**

ଦେଖାଯାଇଛି ଯେ ମା କୀଟନାଶକକୁ ନେଇ କାମ କରୁନଥିଲେ ମଧ୍ୟ ଏହା ଗର୍ଭସ୍ଥ ଶିଶୁର କ୍ଷତି କରିପାରେ । କୀଟନାଶକ ପ୍ରୟୋଗ କରୁଥିବା ସ୍ୱାମୀଠାରୁ ମଧ୍ୟ ଏହି ସଂକ୍ରମଣ ଆସିପାରେ ।





Digitized by srujanika@gmail.com

• **ସ୍ତନ୍ୟପାନ କରୁଥିବା ଶିଶୁ କୀଟନାଶକ ସଂସ୍ପର୍ଶରେ ଆସେ କି ?**

ହଁ, ଯଦି ମାଆ କୀଟନାଶକ ସଂସ୍ପର୍ଶରେ ଆସୁଥାଏ । ତଥାପି ଶିଶୁର ସ୍ୱାସ୍ଥ୍ୟ ଓ ପୋଷଣ ପାଇଁ ସ୍ତନ୍ୟପାନ ଅତି ଜରୁରୀ । ମାଆକ୍ଷୀରରେ ଅନେକଗୁଡ଼ିଏ ପ୍ରତିରକ୍ଷାକାରୀ ଉପାଦାନ ଥାଏ, ଯାହା କି କୃତ୍ରିମ ଖାଦ୍ୟରେ ନଥାଏ ।

ମାଆ ଦେହରେ କୀଟନାଶକ ପଶି ଯକୃତ, ବୃକକ୍ ଆଦି ଦେହର ବିଭିନ୍ନ ଅଙ୍ଗକୁ ଚାଲିଯାଏ । ଏଗୁଡ଼ିକ ପରିସ୍ରା, ମଳ ବା ଝାଳ ଦେଇ ବାହାରେ । କୀଟନାଶକ ଦେହର ମେଦରେ ଯାଇ ଜମିରହେ । ଏହିଭଳି ଗୋଟିଏ ଜାଗା ହେଉଛି ମା'ର ସ୍ତନ । ସେଥିପାଇଁ ଅନେକ ସମୟରେ କୀଟନାଶକ ପ୍ରଦୂଷଣ ପରୀକ୍ଷା କରିବା ପାଇଁ ମା'କ୍ଷୀର ବ୍ୟବହାର କରାଯାଏ । କାରଣ ଏଥିରୁ ନମୁନା ପାଇବା ସହଜ ହୋଇଥାଏ । ଅନ୍ୟ ମେଦର ପରୀକ୍ଷା ଅପେକ୍ଷା ଏହା ବହୁତ ସହଜ । ମନେରଖନ୍ତୁ ଯେ, ପ୍ରତ୍ୟେକ ଲୋକଙ୍କ ଅନ୍ୟାନ୍ୟ ଅଙ୍ଗ ଓ ମେଦ ସଂକ୍ରମିତ ହୋଇପାରେ । ତେଣୁ ସ୍ତନ୍ୟପାନ ବନ୍ଦ କରିବା ଅପେକ୍ଷା କୀଟନାଶକର ବ୍ୟବହାର ବନ୍ଦ କରିବା ଜରୁରୀ ।



ମା' କ୍ଷୀର ଶିଶୁ ପାଇଁ
ସବୁଠାରୁ ଭଲ

• **କୀଟନାଶକ ଯୋଗୁ ଶିଶୁ ଜନ୍ମ ବେଳେ ବିକଳାଙ୍ଗ ହୁଏ କି ?**

**ହଁ।**

ଅନେକ କୀଟନାଶକ ଚମଡ଼ା ଭେଦି ଦେହ ଭିତରକୁ ଯାଇପାରେ । ଏହିଭଳି କୀଟନାଶକ ମା'ର ଗର୍ଭଫୁଲ ଦେଇ ବଢୁଥିବା ଶିଶୁକୁ ପ୍ରଭାବିତ କରେ । ଅନୁଧ୍ୟାନରୁ ଜଣାଯାଇଛି ଯେ କୀଟନାଶକ ସଂସ୍ପର୍ଶରେ ଆସୁଥିବା ମାଆର ଶିଶୁ ବିକାଳାଙ୍ଗ ହୋଇଥାଏ । ବିଶେଷ କରି ଗର୍ଭଧାରଣର ପ୍ରଥମ ତିନିମାସରେ ଏହି ସମସ୍ୟା ହୋଇଥାଏ, କାରଣ ଏହି ସମୟରେ ଶିଶୁର ବିଭିନ୍ନ ଅଙ୍ଗ ସୃଷ୍ଟି ହୋଇଥାଏ ।

କୀଟନାଶକ ସଂସ୍ପର୍ଶରେ ଆସୁଛନ୍ତି ବୋଲି ଯେ ଆପଣଙ୍କ ଶିଶୁ ବିକଳାଙ୍ଗ ହେବ ତା' ନୁହେଁ । କିନ୍ତୁ ଆପଣଙ୍କ ଶିଶୁର ଏଭଳି ହେବାର ସମ୍ଭାବନା ବହୁତ ରହିଛି ।

ଗର୍ଭସଞ୍ଚାର ହେବା ପୂର୍ବରୁ ବାପାମାଆ କୀଟନାଶକ ସଂସ୍ପର୍ଶରେ ଆସିଲେ ଶିଶୁ ଜନ୍ମ ବେଳେ ବିକଳାଙ୍ଗ ହୁଏ କି ନାହିଁ ସେ ବିଷୟରେ ସଠିକ ଜଣାନାହିଁ ।



Digitized by srujanika@gmail.com




- **କେଉଁ କୀଟନାଶକ ଯୋଗୁ ଶିଶୁ ବିକଳାଙ୍ଗ ହୁଏ ?**

ଜନ୍ମ ବେଳେ ବିକଳାଙ୍ଗ କରାଉଥିବା ରାସାୟନିକକୁ ବିରୁପକ ବା ଟେରାଟୋଜେନ୍ କୁହାଯାଏ ।

କୀଟନାଶକ ତିଆରିରେ ବ୍ୟବହୃତ ଅନେକ ରାସାୟନିକ ଯୋଗୁ ଛୁଆ ଜନ୍ମବେଳେ ବିକଳାଙ୍ଗ ହୋଇଥାଏ । ପରୀକ୍ଷାଗାରର ପ୍ରାଣୀଙ୍କ ଉପରେ ଏହା ପରୀକ୍ଷା କରି ଦେଖାଯାଇଛି । ଏଗୁଡ଼ିକ ମୁଖ୍ୟତଃ ସ୍ତନ୍ୟପାୟୀ ତେଣୁ ମଣିଷ ଭଳି ସେମାନେ ମଧ୍ୟ କୀଟନାଶକ ଦ୍ୱାରା ପ୍ରଭାବିତ ହୋଇଥା'ନ୍ତି । ତେଣୁ ଏସବୁ ରାସାୟନିକ ମଣିଷ ଉପରେ ମଧ୍ୟ ସେହିଭଳି ପ୍ରଭାବ ପକାଉଥିବ ।

ଯୁକ୍ତରାଷ୍ଟ୍ର ପାରିବେଶିକ ସୁରକ୍ଷା ସଂସ୍ଥା କେତେକ ରାସାୟନିକର ତାଲିକା କରିଛନ୍ତି । ଏଗୁଡ଼ିକ ଯୋଗୁ ଶିଶୁ ବିକଳାଙ୍ଗ ହୋଇ ଜନ୍ମ ହୋଇଥାଏ (ତଳ ସାରଣୀ ଦେଖନ୍ତୁ) ।

| ତୃଣନାଶୀ | କବକନାଶୀ | କୀଟନାଶକ |
|---|---|---|
| ଆକ୍ରୋଲିନ୍ | ବେନୋମାଇଲ୍ | ଆଭେରମେକ୍ଟିଡ୍ |
| ବେଣ୍ଟାଜୋନ୍ | କାପଟାଫଲ୍ | କ୍ଲୋର୍ଡିମେଫର୍ମ |
| ସ୍ୟାନାଜାଇନ୍ | ଫଲପେଟ୍ | ଏଣ୍ଡୋସଲ୍ଫାଇନ୍ |
| ବ୍ରୋମୋକ୍ସିନିଲ୍ | ଏଚ୍‌ସିବି | ଏଥିଅନ୍ |
| ୨,୪-ଡ଼ି | ମାନ୍‌କୋଜେବ୍ | ଫସ୍‌ମେଟ୍ |
| ଡାଇନୋକ୍ୟାପ୍ | ମାନେବ୍ | ମିଥାଇଲ୍ ପାରାଥିଅନ୍ |
| ଡାଇନୋସେବ୍ | ଟ୍ରାଇବ୍ୟୁଟାଇଲ୍‌ଟିନ୍ ଅକ୍ସାଇଡ୍ | ମିରେକ୍ସ |
| ଡାଇକ୍ୱାଟ | ଟ୍ରାଇବ୍ୟୁଟାଇଲ୍‌ଟିନ୍ ଫ୍ଲୁରାଇଡ୍ | ଟ୍ରାଇକ୍ଲୋର୍‌ଫନ୍ |
| ନାଇଟ୍ରୋଫେନ୍ | ଟ୍ରାଇଫିନାଇଲ୍‌ଟିନ୍ ଏସିଟେଟ୍ | |
| ପାଇକ୍ଲୋରାମ୍ | | |
| ୨,୪,୫-ଟି | | |



Digitized by srujanika@gmail.com

- **କୀଟନାଶକ ଯୋଗୁ କର୍କଟ ରୋଗ ହୋଇଥାଏ କି ?**

**ହଁ!**

ପରୀକ୍ଷାରୁ ଜଣାଯାଇଛି ଯେ କୀଟନାଶକ ଯୋଗୁ କର୍କଟ ରୋଗ ହୋଇଥାଏ । ଏହାର ଅର୍ଥ ନୁହେଁ ଯେ କୀଟନାଶକର ସଂସ୍ପର୍ଶରେ ଆସିଲେ ନିଶ୍ଚିତ କର୍କଟ ରୋଗ ହେବ । ଏଥିରେ ଆପଣଙ୍କୁ କର୍କଟ ରୋଗ ହେବାର ସମ୍ଭାବନା ବହୁତ ରହିଛି ।

ଅନ୍ୟ ଅର୍ଥରେ କହିଲେ ଆପଣଙ୍କୁ କର୍କଟ ରୋଗ ହେବାର ସମ୍ଭାବନା ଅଧିକ ।

ଏଭଳି ରାସାୟନିକକୁ କର୍କଟକାରୀ ବା କାର୍ସିନୋଜେନ୍ କୁହାଯାଏ ।

- **କେଉଁ କୀଟନାଶକ କର୍କଟ ରୋଗ କରିବାର ସମ୍ଭାବନା ଅଛି ?**

ଯୁକ୍ତରାଷ୍ଟ୍ର ପାରିବେଶିକ ସୁରକ୍ଷା ସଂସ୍ଥା ମତରେ ତଳ ସାରଣୀରେ ତାଲିକା ହୋଇଥିବା କୀଟନାଶକଗୁଡ଼ିକ କର୍କଟ ରୋଗ କରାଇବାର ସମ୍ଭାବନା ଅଛି ।

ଏହା କେବଳ ଆରମ୍ଭ: କାଲିଫର୍ଣ୍ଣିଆ ପାରିବେଶିକ ସୁରକ୍ଷା ସଂସ୍ଥା ପ୍ରସ୍ତୁତ କରିଥିବା ତାଲିକା ଏହାର ତିନିଗୁଣ ହେବ

| [illegible] | [illegible] | [illegible] | [illegible] |
|---|---|---|---|
| ଆର୍ସେନିକ୍ | କାପ୍ଟାଫଲ୍ | ଏସିଟୋକ୍ଲୋର୍ | ଡିବିସିପି |
| କାଡ୍ମିଅମ୍ | କାପ୍ଟାନ୍ | ଏସିଫ୍ଲୋର୍ଫେନ୍ | ଇଡିବି |
| କ୍ଲୋରଡେନ୍ | କ୍ଲୋରୋଥାଲୋନିଲ୍ | ଆଲାକୋର୍ | ଡାଇକ୍ଲୋରୋପ୍ରୋପେନ୍ |
| କ୍ଲୋର୍ଡିମେଫର୍ମ | ଫଲ୍ପେଟ୍ | ଆମିଟ୍ରୋଲ୍ | ଡାଇକ୍ଲୋରୋପ୍ରୋପିନ୍ |
| ଡିଡିଟି | ଏଚ୍ସିବି | ଆକ୍ସାଡାଇଜୋନ୍ | |
| ଡାଇକ୍ଲୋର୍ଭସ୍ | ମାନେବ୍ | | |
| ଡାଇଏଲ୍ଡ୍ରିନ୍ | ମାନ୍କୋଜେବ୍ | | |
| ହେପ୍ଟାକ୍ଲୋର୍ | | | |



Digitized by srujanika@gmail.com



ସ୍ନାୟୁ-ବାଷ୍ଠ ପ୍ରକାରର କୀଟନାଶକ

## କେଉଁ ପ୍ରକାରର କୀଟନାଶକ ସବୁଠୁ ଅଧିକ ବିଷାକ୍ତ ?

ସବୁଠାରୁ ଅଧିକ ବିଷାକ୍ତ କୀଟନାଶକ ହେଉଛି ଅର୍ଗାନୋଫସ୍ଫେଟ୍ସ୍ ଓ ମିଥାଇଲ୍ କାର୍ବାମେଟ୍ସ୍ ଭଳି ସ୍ନାୟୁବାଷ୍ଠ ଜାତୀୟ କୀଟନାଶକ

ଏହି କୀଟନାଶକଗୁଡ଼ିକ ବହୁତ ବିପଦଜନକ । କାରଣ ଏଗୁଡ଼ିକ କୋଲିନଷ୍ଟେରେଜ୍‌କୁ ପ୍ରଭାବିତ କରିଥାଏ । ଆମ ସ୍ନାୟୁ ଠିକ୍‌ରେ କାମ କରିବା ପାଇଁ ଏହା ଜରୁରୀ । ଏହି କୀଟନାଶକ କୋଲିନଷ୍ଟେରେଜ୍‌ର ପରିମାଣକୁ କମାଇ ଦେଇଥାଏ । ଫଳରେ ବିଷ ପ୍ରକ୍ରିୟାର ଲକ୍ଷଣ ଦେଖାଯାଇଥାଏ ।

ପୃଥିବୀରେ ଅଧିକାଂଶ କୀଟନାଶକ ଜନିତ ମୃତ୍ୟୁ ଏହି ଜାତୀୟ କୀଟନାଶକ ଦ୍ୱାରା ହୋଇଥାଏ ।

ତଳ ସାରଣୀରେ ସବୁଠାରୁ ବିପଦଜନକ କେତୋଟି ସ୍ନାୟୁବାଷ୍ଠ କୀଟନାଶକର ତାଲିକା ଦିଆଯାଇଛି ।

| ଅର୍ଗାନୋଫସ୍ଫେଟ୍ସ୍ | ମିଥାଇଲ୍ କାର୍ବାମେଟ୍ସ୍ |
|---|---|
| ଆଜିନୋଫସ୍‌ମିଥାଇଲ୍ | ଆଲ୍‌ଡିକାର୍ବ |
| ଡେମେଟନ୍ ମିଥାଇଲ୍ | କାର୍ବୋଫୁରାନ୍ |
| ଡାଇକ୍ଲୋର୍‌ଭସ୍/ଡିଡିଭିପି | ଫୋମେଣ୍ଟାନେଟ୍ |
| ଡାଇସଲ୍‌ଫୋଟନ୍ | ମେଥୋମାଇଲ୍ |
| ଏଥିଅନ୍ | ଅକ୍ସାମାଇଲ୍ |
| ଇଥାଇଲ୍ ପାରାଥିଅନ୍/ପାରାଥିଅନ୍ | ପ୍ରୋପୋକ୍ସର |
| ଫେନାମିଫସ୍ | |
| ଫେନ୍‌ସଲ୍‌ଫୋଥିଅନ୍ | |
| ମେଥାମିଡୋଫସ୍ | |
| ମେଥିଡାଥିଅନ୍ | |
| ମିଥାଇଲ୍ ପାରାଥିଅନ୍ | |
| ମେଭିନ୍‌ଫସ୍ | |
| ଫୋରେଟ୍ | |
| ସଲ୍‌ଫୋଟେପ୍ | |
| ଟର୍ବୁଫସ୍ | |



Digitized by srujanika@gmail.com

**କେତେ ସମୟ ଭିତରେ ସ୍ନାୟୁବାଷ୍ପ ଜାତୀୟ କୀଟନାଶକ ବିଷ ପ୍ରଭାବର ଲକ୍ଷଣ ଦେଖାଇଥାଏ ?**

କୀଟନାଶକ ସଂସ୍ପର୍ଶରେ ଆସିବାର ମାତ୍ର କିଛି ଘଣ୍ଟା ମଧ୍ୟରେ ବିଷ ପ୍ରତିକ୍ରିୟା ଦେଖାଯାଇଥାଏ । ଏହା ତଳଲିଖିତ କେତୋଟି ଦିଗ ଉପରେ ନିର୍ଭର କରିଥାଏ ।

- କୀଟନାଶକ କେତେ ବିଷାକ୍ତ
- କୀଟନାଶକ କେତେ ଘନ ଓ ଏଥିରେ କ'ଣ ମିଶିଛି
- ଏହା ସଂସ୍ପର୍ଶରେ କିପରି ଆସିଲେ - ଦେହ ଉପରେ ସିଧା ଢାଳି ହୋଇଛି ନା ଖାଇଦେଇଛନ୍ତି ।
- କେତେ ସମୟ ହେଲା କୀଟନାଶକକୁ ନେଇ କାମ କରୁଛନ୍ତି
- କିପ୍ରକାର ସୁରକ୍ଷା ପୋଷାକ ବ୍ୟବହାର କରୁଛନ୍ତି
- ଅନ୍ୟ କେଉଁ କୀଟନାଶକ ବ୍ୟବହାର କରୁଛନ୍ତି
- ପାଣିପାଗ କିପରି ଅଛି - ଗରମ ନା ଆର୍ଦ୍ର ।



**ସ୍ନାୟୁ ବାଷ୍ପ ଜାତୀୟ କୀଟନାଶକ**



*Digitized by srujanika@gmail.com*

## • ସ୍ନାୟୁବାନ୍ଧ ଜାତୀୟ କୀଟନାଶକର ବିଷ ପ୍ରଭାବର ଲକ୍ଷଣ

କୀଟନାଶକର ବିଷ ପ୍ରଭାବରେ ତଳଲିଖିତ ଲକ୍ଷଣ ଭିତରୁ କିଛି ବା ସବୁ ଦେଖାଯାଇପାରେ । ଏହା କୀଟନାଶକର ପ୍ରକାର ଏବଂ ଏହା କେତେ ଶୀଘ୍ର ମଣିଷକୁ ପ୍ରଭାବିତ କରୁଛି ତା' ଉପରେ ନିର୍ଭର କରେ ।

ସାଧାରଣତଃ କେବଳ ଗୋଟିଏ ଲକ୍ଷଣ ଦେଖାଯାଏ ନାହିଁ । ବିଷର ପ୍ରଭାବ ଅତି କମ୍ ହୋଇପାରେ ଏବଂ ଲକ୍ଷଣ ସବୁ ଧୀରେ ଧୀରେ ପ୍ରକାଶ ପାଉଥିବାରୁ ତାକୁ ଆମେ ଲକ୍ଷ୍ୟ କରିନଥାଏ ।

କୀଟନାଶକ ବ୍ୟବହାର କରିବା ବେଳେ ଯଦି ଏହି ଲକ୍ଷଣ ଭିତରୁ କିଛି ବି ଜଣାପଡ଼େ, **ତେବେ ସାଙ୍ଗେ ସାଙ୍ଗେ ସେହି ସ୍ଥାନ ଛାଡ଼ି ଚାଲିଯାଆନ୍ତୁ । ଅନ୍ୟ ଲକ୍ଷଣ ସବୁ ପ୍ରକାଶ ପାଇବା ବା ଅବସ୍ଥା ଖରାପ ଆଡ଼କୁ ଯିବା ଯାଏଁ ଅପେକ୍ଷା କରନ୍ତୁ ନାହିଁ ।**


ପେଟକାଟିବା


ଝାପ୍‌ସା ଦେଖାଯିବା


ଛାତି କାଟିବା


ତରଳଝାଡ଼ା ହେବା


ମୁଣ୍ଡ ବୁଲେଇବା


ବହୁତ ଝାଳ ବାହାରିବା


ମୁଣ୍ଡ ବିନ୍ଧା


ମାଂସପେଶୀ ବିନ୍ଧିବା ଓ ଟାଣି ହୋଇଯିବା


ବାନ୍ତି ଲାଗିବା


ବାନ୍ତି ହେବା, ଆଖି, ନାକ ଓ ମୁହଁରୁ ଅଧିକ ପରିମାଣର ପାଣି ବାହାରିବା



Digitized by srujanika@gmail.com

• ଟିକିଏ ଅଧିକ ପରିମାଣର ବିଷ ପ୍ରଭାବର ଲକ୍ଷଣ:

ସ୍ନାୟୁବିଷ ଟିକିଏ ଅଧିକ ପରିମାଣରେ ଦେହକୁ ଯାଇଥିଲେ ଆଗ ଲକ୍ଷଣ ସହ ଆଉ କିଛି ଲକ୍ଷଣ ମଧ୍ୟ ଦେଖାଯାଏ ।




ମନ ବିଚଳିତ ରହିବା



ଚାଲିବାରେ କଷ୍ଟ ହେବା



ଏକାଗ୍ରତା ରଖିବାରେ ଅସୁବିଧା



ସାଧାରଣତଃ ହାଲିଆ ଲାଗିବା



ହଠାତ୍ ମାଂସପେଶୀ ଟାଣି ହୋଇଯିବା



ଆଖିପିତୁଳା ଛୋଟ ହୋଇଯିବା

ଯଦି କିଛି ଦିନ ଧରି ଏହି ବିଷ ଦେହକୁ ଯାଏ ତେବେ ତଳଲିଖିତ ଲକ୍ଷଣ ଦେଖା ଦେଇପାରେ ।



ଶୋଇବାରେ ଅସୁବିଧା



ଦୁଃସ୍ୱପ୍ନ



ଅସ୍ଥିରଭାବ

କୀଟନାଶକ ସଂସ୍ପର୍ଶରେ ଆସିବା ଲାଗି ରହିଲେ ବିଷ ପ୍ରଭାବ ଗୁରୁତର ହୋଇପାରେ ।

କୀଟନାଶକର ବିଷ ପ୍ରଭାବରେ ଏସବୁ ଲକ୍ଷଣ ଭିତରୁ କିଛି ବା ସବୁ ଦେଖାଯାଇପାରେ । ଏହା କୀଟନାଶକର ପ୍ରକାର ଏବଂ ଏହା କେତେ ଶୀଘ୍ର ମଣିଷକୁ ପ୍ରଭାବିତ କରୁଛି ତା' ଉପରେ ନିର୍ଭର କରେ ।



Digitized by srujanika@gmail.com

- **ଗୁରୁତର ବିଷ ପ୍ରଭାବର ଲକ୍ଷଣ:**

ସ୍ନାୟୁବାଷ୍ପ ଜାତୀୟ କୀଟନାଶକ ଯୋଗୁଁ ହେଉଥିବା ଗୁରୁତର ପ୍ରଭାବରେ ଆଗରୁ ଦିଆଯାଇଥିବା ଲକ୍ଷଣ ସହ ଆଉ କିଛି ଲକ୍ଷଣ ମଧ୍ୟ ଦେଖା ଦେଇପାରେ ।

- ଅଚେତ ହୋଇଯିବା
- ଝାଡ଼ା ପରିସ୍ରା ଉପରେ ନିୟନ୍ତ୍ରଣ ନରହିବା
- ଅଚେତନ ଅବସ୍ଥାରେ ରହିବା
- ଆଖିପିତୁଳା ଅତି ଛୋଟ ହୋଇଯିବା
- ଓଠ ଓ ନଖ ନୀଳ ପଡ଼ିଯିବା
- ନିଶ୍ୱାସ ନେବାରେ ଅସୁବିଧା ହେବା
- ଦେହ ଜୋରରେ ଥରିବା
- ମୃତ୍ୟୁ

ବିଷର ପ୍ରଭାବ ଜାଣି ନପାରି ଠିକ୍ ଭାବରେ ଓ ଯଥାଶୀଘ୍ର ଚିକିତ୍ସା ନକଲେ ରୋଗୀ ମରିଯାଇପାରେ ।

---

**ପଦକ୍ଷେପ ପାଇଁ!**



**ଆପଣ ବ୍ୟବହାର କରୁଥିବା କୀଟନାଶକର ଲେବଲକୁ ଦେଖନ୍ତୁ ।**

**ଏଗୁଡ଼ିକ ଭିତରେ ସ୍ନାୟୁବାଷ୍ପ ଜାତୀୟ କୀଟନାଶକ ଅଛି କି ?**

**ଏହି କୀଟନାଶକ ସଂସ୍ପର୍ଶରେ ଆପଣ କେତେ ଆସୁଛନ୍ତି ?**

**କେଉଁ ବାଟଦେଇ ଏହି କୀଟନାଶକ ଆପଣଙ୍କ ଦେହକୁ ପଶୁଛି ?**

**କୀଟନାଶକ ବ୍ୟବହାର କରିବା ସମୟରେ ଆପଣ ଉପରଲିଖିତ ଲକ୍ଷଣ କିଛି ଅନୁଭବ କରିଛନ୍ତି କି ?**

---



Digitized by srujanika@gmail.com

**• କୋଲିନଷ୍ଟେରେଜ୍ ପରୀକ୍ଷା କ'ଣ ?**

କୋଲିନଷ୍ଟେରେଜ୍ ଆମ ରକ୍ତରେ ଥିବା ଏକ ଏନ୍‌ଜାଇମ୍ ବା ବିପାଚକ । ସ୍ନାୟୁଗୁଡ଼ିକ ଠିକ୍ ଭାବରେ କାମ କରିବା ପାଇଁ ଏହା ଦରକାର । କୌଣସି ଲୋକ ଅର୍ଗାନୋଫସ୍‌ଫେଟ୍ ବା କାର୍ବାମେଟ୍ କୀଟନାଶକର ବିଷ ଦ୍ୱାରା ଆକ୍ରାନ୍ତ ହେଲେ କୋଲିନଷ୍ଟେରେଜ୍‌ର ସ୍ତର କମିଯାଏ ।

ଆମ ରକ୍ତରେ ଦୁଇ ପ୍ରକାରର କୋଲିନଷ୍ଟେରେଜ୍ ରହିଛି । ଗୋଟିଏ ଲୋହିତ ରକ୍ତ କଣିକାରେ ଥିବା ବେଳେ ଆରଟି ରକ୍ତର ଜୀବଦ୍ରବ୍ୟ ବା ପ୍ଲାଜ୍ମାରେ ରହିଥାଏ । ସେଥିପାଇଁ କୋଲିନଷ୍ଟେରେଜ୍‌ର ପରୀକ୍ଷା ମଧ୍ୟ ଦୁଇ ପ୍ରକାର ।

ଏଥିରେ ଅନେକ ଉପାଦାନ ପରୀକ୍ଷା ହେଉଥିବାରୁ ଦୁଇଟି ଯାକ ପରୀକ୍ଷା କରିବା ଭଲ । ଯଦି ଗୋଟିଏ ହିଁ ପରୀକ୍ଷା କରିବା ପାଇଁ ସୁବିଧା ମିଳେ ତେବେ, ଲୋହିତ ରକ୍ତ କଣିକାରେ ଥିବା କୋଲିନଷ୍ଟେରେଜ୍‌ର ପରୀକ୍ଷା କରିବା ଉଚିତ । କାରଣ ଏହା ଅନୁସାରେ ଡାକ୍ତର ଚିକିତ୍ସାର ବାଟ ପାଇଥା'ନ୍ତି ।

**• କୋଲିନଷ୍ଟେରେଜ୍ ପରୀକ୍ଷାରୁ ମୁଁ ବିଷ ଦ୍ୱାରା ଆକ୍ରାନ୍ତି ବୋଲି ଡାକ୍ତର ଜାଣିପାରିବେ କି ?**

ହଁ, ଗୁରୁତର ଭାବରେ ପ୍ରଭାବିତ ହୋଇଥିଲେ କୋଲିନଷ୍ଟେରେଜ୍ ସ୍ତର ବେଶ୍ କମିଯାଏ ।

କେବଳ ଗୋଟିଏ ପରୀକ୍ଷାରୁ ଜଣେ କେତେ ପ୍ରଭାବିତ ତାହା କହିବା କଷ୍ଟ । କାରଣ ପ୍ରତ୍ୟେକ ଲୋକର ରକ୍ତରେ କୋଲିନଷ୍ଟେରେଜ୍ ସ୍ତର ଅଲଗା ହୋଇଥାଏ । ସେଥିପାଇଁ କୀଟନାଶକ ସଂସ୍ପର୍ଶରେ ନଆସିଥିବା ବେଳେ ମଧ୍ୟ ଥରେ ପରୀକ୍ଷା କରିବା ଜରୁରୀ । ତାହେଲେ ଦୁଇଟିଯାକ ପରୀକ୍ଷାର ଫଳାଫଳକୁ ତୁଳନା କରି ଦେଖିହେବ ।

ଆପଣଙ୍କ କୋଲିନଷ୍ଟେରେଜ୍ ସ୍ତର ସ୍ୱାଭାବିକ ଅଛି ବୋଲି ଡାକ୍ତର କହିପାରନ୍ତି । କିନ୍ତୁ ତୁଳନାତ୍ମକ ପରୀକ୍ଷା ନହେବା ପାଏଁ ସୁରକ୍ଷିତ ମନେ କରିବା ଅନୁଚିତ ।

ଦୀର୍ଘସମୟ ଧରି କୀଟନାଶକ ସଂସ୍ପର୍ଶରେ ଆସୁଥିବା ଲୋକମାନେ ନିୟମିତ ନିଜର କୋଲିନଷ୍ଟେରେଜ୍ ସ୍ତର ପରୀକ୍ଷା କରିବା ଉଚିତ ।

---

**ପଦକ୍ଷେପ ପାଇଁ!**



**ଆପଣ ସ୍ନାୟୁବାଦ୍ଧ ଜାତୀୟ କୀଟନାଶକ ବ୍ୟବହାର କରନ୍ତି କି ?**

**ଯଦି କରୁଥା'ନ୍ତି ତେବେ, ଆପଣଙ୍କ କମ୍ପାନୀ ନିୟମିତ କୋଲିନଷ୍ଟେରେଜ୍ ପରୀକ୍ଷା କରାଏ କି ?**

**ପରୀକ୍ଷା ଫଳକୁ ବୁଝିବା ପାଇଁ ଉପଯୁକ୍ତ ତାଲିମ ପାଇଥିବା ଲୋକି ଅଛନ୍ତି କି ?**

**ଯଦି ଏହା ହେଉନଥାଏ, ତେବେ ଉପଯୁକ୍ତ ସ୍ୱାସ୍ଥ୍ୟ ସେବା ପାଇବା ପାଇଁ ଆପଣ କ'ଣ କରିପାରିବେ ?**

---



Digitized by srujanika@gmail.com

- **ବିଷ ଦ୍ୱାରା ଆକ୍ରାନ୍ତ ହୋଇଥିଲେ, କୋଲିନଷ୍ଟେରେଜ୍ ସ୍ତର ସାଧାରଣ ଅବସ୍ଥାକୁ ଆସିବା ପାଇଁ କେତେ ସମୟ ଲାଗେ ?**

ଏହା ମୁଖ୍ୟତଃ କୀଟନାଶକର ପ୍ରକାର ଓ ପରିମାଣ ଉପରେ ନିର୍ଭର କରିଥାଏ । କୋଲିନଷ୍ଟେରେଜ୍‌ର ସ୍ତର ଦୁଇ ଦିନରେ ବି ଠିକ୍ ହୋଇପାରେ ବା ମାସକରୁ ବି ବେଶୀ ସମୟ ଲାଗିପାରେ ।

କୋଲିନଷ୍ଟେରେଜ୍‌ର ସ୍ତର ଯଥେଷ୍ଟ ନବଢ଼ିବା ଯାଏଁ କାମକୁ ଯିବା ଉଚିତ ନୁହେଁ । ଯଦି ଏହି ସ୍ତର ପ୍ରାୟ କମ୍ ରହୁଛି ତେବେ ପୁଣି ଥରେ କୀଟନାଶକ ସଂସ୍ପର୍ଶରେ ଆସିବା ବିପଦଜନକ ।

୧୦୦% (ଆଧାରରେଖାର) — ଆପଣଙ୍କ ପାଇଁ ସ୍ୱାଭାବିକ - ଆଧାରରେଖା

୭୫% (ଆଧାରରେଖାର) — ଅଳ୍ପ ବିଷ ପ୍ରଭାବିତ - ସାଧାରଣତଃ କୌଣସି ଲକ୍ଷଣ ନଥାଏ ।

୫୦% (ଆଧାରରେଖାର) — ଟିକିଏ ଅଧିକ ବିଷ ପ୍ରଭାବିତ - ଲକ୍ଷଣ ଦେଖାଦେଇପାରେ ।

୨୫% (ଆଧାରରେଖାର) — ଗୁରୁତର ବିଷ ପ୍ରଭାବିତ - ସାଧାରଣତଃ ମୁଣ୍ଡବ୍ୟଥା, ମୁଣ୍ଡ ବୁଲେଇହେବା, ବାନ୍ତି ଲାଗିବା ଓ ବାନ୍ତି ହେବା, ଝାଳ ବାହାରିବା ଓ ଅନ୍ୟାନ୍ୟ ଲକ୍ଷଣ ଦେଖାଯାଏ ।

୦% (କୌଣସି ଅଙ୍ଗ କାମ କରୁନଥିବ) — ଅଚେତନ ଅବସ୍ଥା - ଚିକିତ୍ସା ନକଲେ ମରିଯାଇପାରେ ।

---

**ପଦକ୍ଷେପ ପାଇଁ!**



**ଯଦି ଆପଣଙ୍କର କୋଲିନଷ୍ଟେରେଜ୍‌ର ସ୍ତର ବହୁତ କମ୍ ଥିବ, ତେବେ କ'ଣ କରିବେ ?**

**ରୋଜଗାର ପାଇଁ ଆପଣ ଅନ୍ୟ କିଛି କାମଧନ୍ଦା କରିପାରିବେ କି ?**

---



Digitized by srujanika@gmail.com

• **ସ୍ନାୟୁବାଧ୍ୟ ଜାତୀୟ କୀଟନାଶକର ବିଷ ପ୍ରଭାବର ଚିକିତ୍ସା ପାଇଁ ଔଷଧ ଅଛି କି ?**

ଅର୍ଗାନୋଫସ୍‌ଫେଟ୍ ଓ ମିଥାଇଲ୍ କାର୍ବାମେଟ୍ କୀଟନାଶକର ବିଷ ପ୍ରଭାବର ଚିକିତ୍ସା ପାଇଁ ଆଟ୍ରୋପିନ୍ ନାମକ ଔଷଧ ବ୍ୟବହାର କରାଯାଏ । ଆଟ୍ରୋପିନ୍ ଗୋଟିଏ ପ୍ରତିବିଷ । ଏହା ବିଷ ପ୍ରଭାବକୁ କାଟିଥାଏ ।

ସେହିପରି ଆଉ ଏକ ପ୍ରତିବିଷ ହେଉଛି ପ୍ରାଲିଡୋକ୍ସିମ୍ (୨-ପିଏଏମ୍) । ଏହା ମଧ୍ୟ କେତେକ ଅର୍ଗାନୋଫସ୍‌ଫେଟ୍ ବିଷ ପ୍ରଭାବର ଚିକିତ୍ସା ପାଇଁ ବ୍ୟବହୃତ ହୋଇଥାଏ । ବିଷର ପ୍ରଭାବ ଆରମ୍ଭ ହେବା ସାଙ୍ଗେ ସାଙ୍ଗେ ଦେଲେ ଏହା ଭଲ କାମ କରିଥାଏ ।

ଏସବୁ ଔଷଧ କେବେ, କେତେ, କେତେ ଥର ଏବଂ କେତେ ସମୟ ପାଇଁ ଦିଆଯିବ ତା'ର ଗୋଟିଏ ନିର୍ଦ୍ଦିଷ୍ଟ ବାଟ ରହିଛି । ପ୍ରକୃତରେ ପ୍ରତିବିଷ ମଧ୍ୟ ଗୋଟିଏ ବିଷାକ୍ତ ପଦାର୍ଥ । ଏଗୁଡ଼ିକୁ ଠିକ୍ ଭାବରେ ଦିଆନଗଲେ ବିଷାକ୍ତ ହୋଇଯାଇପାରେ ।

• **ଅନ୍ୟ ପ୍ରକାରର କୀଟନାଶକର ପ୍ରଭାବର ଚିକିତ୍ସା ପାଇଁ ଔଷଧ ଅଛି କି ?**

**ନା!**

ଅଧିକାଂଶ କୀଟନାଶକ ବିଷର ପ୍ରଭାବ ପାଇଁ ପ୍ରତିବିଷ ନାହିଁ ।



Digitized by srujanika@gmail.com



# କେତେକ କୀଟନାଶକ ଓ ସେମାନଙ୍କ ଲକ୍ଷଣ

**ପାରାକ୍ୱେଟ୍ ବିଷ ପ୍ରଭାବର ଲକ୍ଷଣଗୁଡ଼ିକ କ'ଣ ?**

ପାରାକ୍ୱେଟ୍ ଏକ ଶକ୍ତିଶାଳୀ ଉତ୍ତେଜକ । ଏହା ଆଖି, ଚମଡ଼ା, ନାକ ଓ ଗଳାର ଗୁରୁତର କ୍ଷତି କରିପାରେ ।

ଏହାଦ୍ୱାରା ଚମଡ଼ା ଓ ଗଳାରେ ଘାଆ ହୋଇଥାଏ ଓ ନାକରୁ ରକ୍ତ ପଡ଼ିଥାଏ ।

ପାରକ୍ୱେଟ୍ ଯୋଗୁଁ ଆଙ୍ଗୁଠି ନଖ ନଷ୍ଟ ହୋଇଯାଏ, ଏପରିକି ତାହା ଖସିପଡ଼େ ।

ଏହା ଯକୃତ ଓ ବୃକକ୍ ନଷ୍ଟ କରିଦେଇପାରେ ।

ଫୁସ୍‌ଫୁସ୍‌ରେ ଅସୁବିଧା ସୃଷ୍ଟି ହେବା ଯୋଗୁଁ ଅଣନିଶ୍ୱାସୀ ହୋଇ ରୋଗୀର ମୃତ୍ୟୁ ହୋଇପାରେ ।

- **ପାରାକ୍ୱେଟ୍ ବିଷ ପ୍ରକ୍ରିୟା ପାଇଁ ପ୍ରତିବିଷ ଅଛି କି?**

**ନା!**

ଅତି ଅଳ୍ପ ପରିମାଣର ପାରାକ୍ୱେଟ୍ ଖାଇଦେଲେ ବି ମଣିଷ ମରିଯାଇପାରେ

ଚମଡ଼ା ଦ୍ୱାରା ପାରକ୍ୱେଟ୍ ଦେହ ଭିତରକୁ ଯାଇ ଶ୍ରମିକମାନେ ମରିଯା'ନ୍ତି ।

ସାରା ପୃଥିବୀରେ ପାରାକ୍ୱେଟ୍ ଯୋଗୁଁ ଅନେକ ମୃତ୍ୟୁ ଘଟୁଛି ।

---

**ପଦକ୍ଷେପ ପାଇଁ!**



**ଆପଣ ପାରାକ୍ୱେଟ୍ ସଂସ୍ପର୍ଶରେ ଆସୁଛନ୍ତି କି ?**

**କେତେ ଥର ?**

**କେଉଁ ବାଟରେ ଏହା ଆପଣଙ୍କ ଦେହ ଭିତରକୁ ଯାଏ ?**

**ଏହି କୀଟନାଶକ ବ୍ୟବହାର କରିବା ସମୟରେ ଆପଣ ଉପରଲିଖିତ କୌଣସି ଲକ୍ଷଣ ଅନୁଭବ କରିଛନ୍ତି କି ?**

---



Digitized by srujanika@gmail.com




**ମିଥାଇଲ୍ ବ୍ରୋମାଇଡ୍ ବିଷ ପ୍ରଭାବର ଲକ୍ଷଣ କ'ଣ ?**

- ☑ ମୁଣ୍ଡ ବିନ୍ଧିବା,
- ☑ ମୁଣ୍ଡ ବୁଲେଇହେବା,
- ☑ ବାନ୍ତି ଲାଗିବା,
- ☑ ବାନ୍ତି ହେବା,
- ☑ ଦେହ ଥରିବା,
- ☑ ଚାଲିବାରେ କଷ୍ଟ ହେବା

ମିଥାଇଲ୍ ବ୍ରୋମାଇଡ୍ ଗୋଟିଏ ରଙ୍ଗହୀନ ବାଷ୍ପ । ଅଳ୍ପ ପରିମାଣର ଥିଲେ ଏହା ଗନ୍ଧହୀନ । ସେଥିପାଇଁ ମିଥାଇଲ୍ ବ୍ରୋମାଇଡ୍‌କୁ ସହଜରେ ଜାଣିବା ପାଇଁ ବେଳେ ବେଳେ ଏଥିରେ ଲୁହବୁହା ବାଷ୍ପ କ୍ଲୋରୋପିକ୍ରିନ୍ ମିଶାଯାଇଥାଏ ।

**• ମିଥାଇଲ୍ ବ୍ରୋମାଇଡ୍ ଘାତକ ହୋଇପାରେ ।**

ମିଥାଇଲ୍ ବ୍ରୋମାଇଡ୍ ଫୁସ୍‌ଫୁସ୍ ପାଇଁ ବହୁତ ସମସ୍ୟା ସୃଷ୍ଟି କରେ । ଏହା ଯୋଗୁ ନିଶ୍ୱାସ ନେବାରେ ଅସୁବିଧା, ନିମୋନିଆ ଓ ଫୁସ୍‌ଫୁସ୍‌ରେ ପାଣି ଜମିଯିବା ଆଦି ହୋଇଥାଏ । ଏହା ସଂସ୍ପର୍ଶରେ ଆସିବାର ପ୍ରଥମ କେତେ ଘଣ୍ଟା ଭିତରେ କିଛି ହୋଇ ନଥାଏ ।

ମିଥାଇଲ୍ ବ୍ରୋମାଇଡ୍ ଚମଡ଼ାରେ ଲାଗିଲେ କୁଣ୍ଡେଇ ହୁଏ, ଫୋଟକା ହୋଇଯାଏ ବା ପୋଡ଼ିଯାଇପାରେ ।

ମିଥାଇଲ୍ ବ୍ରୋମାଇଡ୍ ବିଷ ପ୍ରଭାବରୁ ଚିକିତ୍ସିତ ହୋଇଥିବା କିଛି ଲୋକଙ୍କର ସବୁଦିନ ପାଇଁ ସ୍ନାୟୁତନ୍ତ୍ରରେ ସମସ୍ୟା ଦେଖା ଦେଇପାରେ । ଫଳରେ ବ୍ୟକ୍ତିତ୍ୱରେ ପରିବର୍ତ୍ତନ, ସ୍ମୃତିଶକ୍ତି କମିଯିବା, ଉଦ୍‌ବିଗ୍ନ ହୋଇ ରହିବା, ଏକାଗ୍ରତା ହରାଇବା ଏବଂ ଅନ୍ୟ ମାନସିକ ସମସ୍ୟା ଦେଖାଯାଇପାରେ ।

---

**ପଦକ୍ଷେପ ପାଇଁ!**



**ଆପଣ ମିଥାଇଲ୍ ବ୍ରୋମାଇଡ୍ ସଂସ୍ପର୍ଶରେ ଆସୁଛନ୍ତି କି ?**

**କେତେ ଅଧିକା ଥର ?**

**କେଉଁ ବାଟରେ ଏହା ଆପଣଙ୍କ ଶରୀରରେ ପଶେ ?**

**ଏହି କୀଟନାଶକ ବ୍ୟବହାର କରିବା ସମୟରେ ଆପଣ ଉପରଲିଖିତ କୌଣସି ଲକ୍ଷଣ ଅନୁଭବ କରିଛନ୍ତି କି ?**

---



Digitized by srujanika@gmail.com




**ଅର୍ଗାନୋକ୍ଲୋରିନ୍ ବିଷ ପ୍ରଭାବର ଲକ୍ଷଣ କ'ଣ ?**

- **ଗୁରୁତର ବିଷ ପ୍ରଭାବର ଲକ୍ଷଣ:**

☑ ବାନ୍ତି ଲାଗିବା
☑ ବାନ୍ତି ହେବା
☑ ମୁଣ୍ଡ ବିନ୍ଧିବା
☑ ମୁଣ୍ଡ ବୁଲେଇବା
☑ ଉଗ୍ର ହେବା ବା ମାନସିକ ଉଦ୍‌ବିଗ୍ନତା
☑ ମାଂସପେଶୀ ଟାଣି ହୋଇଯିବା
☑ ମାଂସପେଶୀ ଦୁର୍ବଳ ଲାଗିବା
☑ ମୁର୍ଚ୍ଛା ହୋଇଯିବା ।

- **ଦୀର୍ଘକାଳୀନ ବିଷ ପ୍ରଭାବରେ ଉପରଲିଖିତ ଲକ୍ଷଣ ସହ ଆଉ କିଛି ଲକ୍ଷଣ ଦେଖାଯାଏ ।**

☑ ଦେହ ଶେତା ପଡ଼ିବା
☑ ଚମଡ଼ାରେ ଘା' ହେବା
☑ ବନ୍ଧ୍ୟାତ୍ୱ
☑ ହୃତପିଣ୍ଡରେ ସମସ୍ୟା
☑ ଯକୃତରେ ସମସ୍ୟା
☑ ଅଚେତ ହୋଇଯିବା ।

- **ଅର୍ଗାନୋକ୍ଲୋରିନ୍‌ର କେତୋଟି ଉଦାହରଣ:**

☑ ଆଲ୍‌ଡ୍ରିନ୍
☑ କ୍ଲୋର୍‌ଡେନ୍
☑ ଡିଡିଟି
☑ ଡାଇଏଲ୍‌ଡ୍ରିନ
☑ ଏଣ୍ଡୋସଲ୍‌ଫାନ୍
☑ ଏଣ୍ଡ୍ରିନ୍
☑ ହେପ୍‌ଟାକ୍ଲୋର୍
☑ ଲିଣ୍ଡେନ୍

---

**ପଦକ୍ଷେପ ପାଇଁ!**



**ଆପଣ ଅର୍ଗାନୋକ୍ଲୋରିନ୍ ସଂସ୍ପର୍ଶରେ ଆସୁଛନ୍ତି କି ?**

**କେତେ ଅଧିକା ଥର ?**

**କେଉଁ ବାଟରେ ଏହା ଆପଣଙ୍କ ଶରୀରରେ ପଶେ ?**

**ଏହି କୀଟନାଶକ ବ୍ୟବହାର କରିବା ସମୟରେ ଆପଣ ଉପରଲିଖିତ କୌଣସି ଲକ୍ଷଣ ଅନୁଭବ କରିଛନ୍ତି କି ?**

---



Digitized by srujanika@gmail.com

# ଦେହ କଥା ଶୁଣିବା !

• **ବିଷ ଚରିଗଲେ କ'ଣ କରିବ ?**

ଅଧିକାଂଶ କୀଟନାଶକ ବିଷର କିଛି ନିର୍ଦ୍ଦିଷ୍ଟ ପ୍ରଭାବ ନଥାଏ । ଅର୍ଥାତ ଅନ୍ୟ କାରଣରୁ ଦେହ ଖରାପ ହେଲେ ବି ସେଇ ଏକା ଲକ୍ଷଣ ଦେଖାଯାଏ । ସେହିଭଳି ଗୋଟିଏ ଲକ୍ଷଣର ଉଦାହରଣ ହେଉଛି ମୁଣ୍ଡବ୍ୟଥା । ଅନେକଗୁଡ଼ିଏ କାରଣରୁ ଏହା ହୋଇପାରେ ।

ଅଳ୍ପ ପରିମାଣର ବିଷ ଦ୍ୱାରା ପ୍ରଭାବିତ ହୋଇଥିଲେ ଲକ୍ଷଣ ଦେଖିଲେ ତା'ର କାରଣ ଜାଣିବା କଷ୍ଟ । ଏହା ଥଣ୍ଡାଜର, ପେଟ ଖରାପ ବା ଅନ୍ୟ କେଉଁ କାରଣରୁ ହେଉଛି ଜଣାପଡ଼ିବ ନାହିଁ ।

କିନ୍ତୁ କାମକୁ ଗଲାବେଳକୁ ଯଦି ଦେହ ଖରାପ ନଥିଲା, କିନ୍ତୁ କୀଟନାଶକ ନେଇ କାମ କରିବା ସାଙ୍ଗେ ସାଙ୍ଗେ ଦେହ ଖରାପ ଲାଗିଲା, ତେବେ ଏହାର କାରଣ ନିଶ୍ଚୟ କୀଟନାଶକର ପ୍ରଭାବ ।

ସେଠାରେ କାମ କରୁଥିବା ଅନ୍ୟମାନଙ୍କଠାରେ ମଧ୍ୟ ଯଦି ସେହି ଏକା ପ୍ରକାର ଲକ୍ଷଣ ଦେଖାଯାଏ, ତେବେ ଏହା କୀଟନାଶକ ଯୋଗୁଁ ହେବାର ସମ୍ଭାବନା ବେଶୀ ।

କେଉଁ କାରଣରୁ ଏଭଳି ହେଉଛି ନିଶ୍ଚିତ ନଥିଲେ, ଧରିନିଅନ୍ତୁ ଯେ ଏହା କୀଟନାଶକ ଯୋଗୁ ହେଉଛି । ବିଷର ପ୍ରଭାବ ଗୁରୁତର ହେବା ଯାଏଁ ଅପେକ୍ଷା କରନ୍ତୁ ନାହିଁ ।






Digitized by srujanika@gmail.com

- **କୀଟନାଶକ ଦ୍ୱାରା ପ୍ରଭାବିତ ହେବା ଭଳି ମନେହେଲେ କ'ଣ କରିବେ ?**

ପ୍ରଥମ ଓ ଗୁରୁତ୍ୱପୂର୍ଣ୍ଣ କାମ ହେଉଛି କୀଟନାଶକ ନେଇ କାମ କରିବା ସାଙ୍ଗେ ସାଙ୍ଗେ ବନ୍ଦ କରନ୍ତୁ । ସେ ଜାଗା ଛାଡ଼ି ଚାଲିଯାଆନ୍ତୁ ।

ଚମଡ଼ା ବାଟ ଦେଇ କୀଟନାଶକ ଯାଇଥିବାର ସନ୍ଦେହ ହେଲେ, ଲୁଗା ବଦଳାଇ ଦିଅନ୍ତୁ ଓ ସେଗୁଡ଼ିକୁ ସାବୁନ ପାଣିରେ ଧୋଇ ଦିଅନ୍ତୁ

ନିଜର ଲକ୍ଷଣ ବିଷୟରେ ପରିବାରର ଅନ୍ୟମାନଙ୍କୁ, ସହକର୍ମୀ ବା ତତ୍ତ୍ୱାବଧାରକଙ୍କୁ ଜଣାନ୍ତୁ । ଚିକିତ୍ସାର ବ୍ୟବସ୍ଥା କରିବା ପାଇଁ ସେମାନଙ୍କୁ କୁହନ୍ତୁ ।

ଗୁରୁତର ଭାବରେ କୀଟନାଶକ ଦ୍ୱାରା ପ୍ରଭାବିତ ଥିଲେ ସାଙ୍ଗେ ସାଙ୍ଗେ ଚିକିତ୍ସା ଆବଶ୍ୟକ ।

ଏସବୁ ଲକ୍ଷଣ କୀଟନାଶକର ବିଷାକ୍ତ ପ୍ରଭାବ ବୋଲି ନିଶ୍ଚିତ ନଥିଲେ ବି ସେ ଜାଗା ଛାଡ଼ି ଚାଲିଯାଆନ୍ତୁ ।




**ଜଣେ ସ୍ୱାସ୍ଥ୍ୟକର୍ମୀ ସେଠାରେ ଥିଲେ ତାଙ୍କୁ ତଳ ପ୍ରଶ୍ନ କେତୋଟି ପଚାରନ୍ତୁ:**

- ବର୍ତ୍ତମାନ ମୋ ଅସୁସ୍ଥତା କୀଟନାଶକ ଯୋଗୁଁ ହୋଇଥାଇପାରେ କି ?
- ଏହି ସମସ୍ୟା କୀଟନାଶକ ଯୋଗୁ ବୋଲି କେଉଁ ପରୀକ୍ଷାରୁ ଜଣାପଡ଼ିବ ?
- ମୁଁ କୀଟନାଶକ ନେଇ କାମ କରିବା ବନ୍ଦ କରିଦେବି କି ? କେତେ ଦିନ ପାଇଁ ?
- ଏଥିପାଇଁ କିଛି ଔଷଧ ଅଛି କି ?
- ଗର୍ଭବତୀ ସମୟରେ କୀଟନାଶକ ସଂସ୍ପର୍ଶରେ ଆସିଲେ ଅସୁବିଧା ହେବ କି ?

**ବୋତଲ ଓ ଖାଲି ଡବାକୁ ଆଣିବାକୁ ଭୁଲନ୍ତୁ ନାହିଁ !**

ମନେରଖନ୍ତୁ, କୀଟନାଶକର ବୋତଲ ବା ଲେବଲ ସାଙ୍ଗରେ ଆଣିଥିଲେ ସ୍ୱାସ୍ଥ୍ୟକର୍ମୀ ଆପଣଙ୍କ ଲକ୍ଷଣର କାରଣ ଜାଣିବାରେ ସୁବିଧା ହେବ ।



Digitized by srujanika@gmail.com

**ଲକ୍ଷଣଗୁଡ଼ିକ କୀଟନାଶକ ଯୋଗୁଁ ବୋଲି ଜଣେ ସ୍ୱାସ୍ଥ୍ୟକର୍ମୀ କିପରି ଜାଣିବେ ?**

ସ୍ୱାସ୍ଥ୍ୟକର୍ମୀ ତଳଲିଖିତ କେତୋଟି କଥା ଜାଣିବା ଦରକାର:

☑ ଆପଣ ବ୍ୟବହାର କରୁଥିବା କୀଟନାଶକର ନାଁ ।

☑ କେତେ ପରିମାଣ ଖାଇଛନ୍ତି ।

☑ ସଂସ୍ପର୍ଶରେ ଆସିଥିବା ଅବସ୍ଥା । କେଉଁ ବାଟରେ ବିଷ ଯାଇଛି (ଚମଡ଼ା, ଫୁସ୍‌ଫୁସ୍, ପାକସ୍ଥଳୀ ବା ଏସବୁ ବାଟରେ) । ଦେହ ଭିତରକୁ ବିଷ ଯିବାର କାରଣ (ଜାଣିଶୁଣି, ଦୁର୍ଘଟଣା, ଅପବ୍ୟବହାର ବା ମାତ୍ରାଧିକ ସଂସ୍ପର୍ଶ) ।

☑ ସଂସ୍ପର୍ଶରେ ଆସିଥିବା ସମୟ ଏବଂ କେତେ ସମୟ ପରେ ଲକ୍ଷଣମାନ ପ୍ରକାଶ ପାଇଲା ।

☑ ଲକ୍ଷଣଗୁଡ଼ିକ କ'ଣ ? କେଉଁ ଲକ୍ଷଣ ଆଗ ଦେଖାଗଲା ଓ ତା' ପର ଲକ୍ଷଣ ଆଦିର କ୍ରମ ବୁଝାଇ କହିପାରିଲେ ବହୁତ ସୁବିଧା ହେବ ।

☑ ଅନ୍ୟ ସହକର୍ମୀମାନଙ୍କର ବି ସେହି ଏକା ସମସ୍ୟା ହେଉଛି କି ?

☑ ଆପଣ ସ୍ନାୟୁବାଷ୍ପ ଜାତୀୟ କୀଟନାଶକ (କାର୍ବାମେଟ୍ ବା ଅର୍ଗାନୋଫସ୍ଫେଟ୍) ବ୍ୟବହାର କରୁଥିଲେ ଡାକ୍ତର ଆପଣଙ୍କ କୋଲିନଷ୍ଟେରେଜ୍ ସ୍ତର ଜାଣିବାକୁ ଚାହିଁବେ ।

ଅନେକ ସ୍ୱାସ୍ଥ୍ୟକର୍ମୀ କୀଟନାଶକର ବିଷ ପ୍ରଭାବର ଲକ୍ଷଣ ଜାଣିବା ପାଇଁ ଉପଯୁକ୍ତ ତାଲିମ ପାଇନାହାନ୍ତି । ବେଳେବେଳେ ସେମାନେ ଭୁଲ ରୋଗ ଚିହ୍ନଟ କରନ୍ତି ଏବଂ ବିଶେଷ ଗୁରୁତ୍ୱ ଦିଅନ୍ତି ନାହିଁ ।

ଅନ୍ୟ ଜଣଙ୍କର ମତାମତ ଜାଣିବା ପାଇଁ ସଂକୋଚ କରନ୍ତୁ ନାହିଁ ।



Digitized by srujanika@gmail.com

## କୀଟନାଶକ ଯୋଗୁଁ ହେଉଥିବା ଅସୁବିଧାକୁ ମୋ ତତ୍ତ୍ୱାବଧାରକ ବିଶ୍ୱାସ କରୁନଥିଲେ ମୁଁ କ'ଣ କରିବି ?

ଏହା ଏକ ସାଧାରଣ ସମସ୍ୟା ଏବଂ ଏଥିପାଇଁ କୌଣସି ସରଳ ଉତ୍ତର ନାହିଁ । ଅନେକ ସମୟରେ ତତ୍ତ୍ୱାବଧାରକଙ୍କ ଅସନ୍ତୋଷ ଅପେକ୍ଷା ଆପଣଙ୍କ କାମ ଓ ରୋଜଗାର ବେଶୀ ଜରୁରୀ ହୋଇଥାଏ । ବେଳେବେଳେ ତତ୍ତ୍ୱାବଧାରକମାନେ କୀଟନାଶକର ବିଷାକ୍ତ ପ୍ରଭାବ ବିଷୟରେ ଜାଣି ନଥା'ନ୍ତି । ସେମାନେ କର୍ମଚାରୀଙ୍କ ସ୍ୱାସ୍ଥ୍ୟ ଅପେକ୍ଷା ଲାଭ ପାଇଁ ବେଶୀ ଆଗ୍ରହୀ ଥା'ନ୍ତି ।

ଏତିକି ମନେରଖନ୍ତୁ. ଆପଣ ହିଁ ଆପଣଙ୍କ ଦେହକୁ ଭଲରେ ବୁଝିଛନ୍ତି ।

କୀଟନାଶକଗୁଡ଼ିକ ବିଷାକ୍ତ ଏବଂ ବହୁଦିନ ଧରି ଏହାର ବ୍ୟବହାର ମୃତ୍ୟୁର କାରଣ ହୋଇପାରେ ।



### ପଦକ୍ଷେପ ପାଇଁ!



ଆପଣଙ୍କ ଦେଶରେ ଥିବା ଜୀବିକା ସମ୍ବନ୍ଧୀୟ ସ୍ୱାସ୍ଥ୍ୟ ଓ ନିରାପତ୍ତା ଆଇନ ବିଷୟରେ ଜାଣନ୍ତୁ । ବିଶେଷ କରି ଚାଷୀ କୀଟନାଶକ ସଂସ୍ପର୍ଶରେ ଆସିଲେ ସେ ବିଷୟରେ ଥିବା ନିୟମ ଜାଣନ୍ତୁ ।

ଜୀବୀକା କ୍ଷେତ୍ରରେ ଅସୁସ୍ଥତା ପାଇଁ ଥିବା କ୍ଷତିପୂରଣ ବିଷୟରେ ମଧ୍ୟ ଜାଣନ୍ତୁ ।



Digitized by srujanika@gmail.com

### ଆଖିରେ କୀଟନାଶକ ପଡ଼ିଗଲେ କ'ଣ କରିବି ?

ଆଖିରେ କୀଟନାଶକ ପଡ଼ିଯିବା ଯୋଗୁଁ ଅନେକ ଚାଷୀ ଅନ୍ଧ ହୋଇଯାଇଛନ୍ତି । ଆଖିରେ କୀଟନାଶକ ପଡ଼ିଗଲେ ସାଧାରଣତଃ ଆଖି ପୋଡ଼ିବା, ପାଣି ବୋହିବା ଓ ଝାପସା ଦେଖାଯିବା ଆଦି ଲକ୍ଷଣ ଦେଖାଯାଏ । ବିଷର ଗୁରୁତର ପ୍ରଭାବରେ ଆଖି ପିତୁଲା ଅତି ଛୋଟ ହୋଇଯାଇପାରେ ।

**ଦୁର୍ଘଟଣାବଶତଃ ଆଖିରେ କୀଟନାଶକ ପଡ଼ିଗଲେ ତଳଲିଖିତ କାମଗୁଡ଼ିକ କରନ୍ତୁ:**

- ☑ ଆଖିପତାକୁ ଆଙ୍ଗୁଠି ସାହାଯ୍ୟରେ ଖୋଲା ରଖି ପରିଷ୍କାର ପାଣିରେ ଅତି କମ୍‌ରେ ଅଧଘଣ୍ଟା ଯାଏ ଧୁଅନ୍ତୁ । ଯଦି ଗୋଟିଏ ଆଖିରେ ପଡ଼ିଥାଏ ତେବେ ସାବଧାନ ହୁଅନ୍ତୁ ଯେପରି ଆର ଆଖିରେ ବିଷ ନପଡ଼େ ।
- ☑ ଆଖି ପାଇଁ ଥିବା ତରଳ ଔଷଧ ବ୍ୟବହାର କରନ୍ତୁ ନାହିଁ । ସେଗୁଡ଼ିକ ପ୍ରତିବିଷ ନୁହେଁ । ପୁଣି ସେଗୁଡ଼ିକ ଅଳ୍ପ ପରିମାଣରେ ବ୍ୟବହାର ହେଉଥିବାରୁ ଆଖିରୁ ବିଷକୁ ପୂରାପୂରି ଧୋଇପାରିବ ନାହିଁ ।
- ☑ ସାଙ୍ଗେ ସାଙ୍ଗେ ଜଣେ ସ୍ୱାସ୍ଥ୍ୟକର୍ମୀଙ୍କୁ ଦେଖାକରନ୍ତୁ ।
- ☑ ସ୍ୱାସ୍ଥ୍ୟକର୍ମୀଙ୍କ ପାଖକୁ ଗଲାବେଳେ କୀଟନାଶକର ଡବା ସାଙ୍ଗରେ ନିଅନ୍ତୁ ।



### ଦେହରେ କୀଟନାଶକ ଢାଳି ହୋଇଗଲେ କ'ଣ କରିବି ?

- ☑ ଯଥେଷ୍ଟ ସାବୁନପାଣିରେ କୀଟନାଶକକୁ ସାଙ୍ଗେ ସାଙ୍ଗେ ଧୋଇଦିଅନ୍ତୁ ।
- ☑ ସଂକ୍ରମିତ ଲୁଗା ଓ ଗହଣା କାଢ଼ିଦିଅନ୍ତୁ ।
- ☑ ଯେତେ ଶୀଘ୍ର ସମ୍ଭବ ଗାଧୋଇ ପଡ଼ନ୍ତୁ ।
- ☑ ବିଷ ପ୍ରଭାବର କୌଣସି ପ୍ରକାରର ଲକ୍ଷଣ ଦେଖାଗଲେ ସାଙ୍ଗେ ସାଙ୍ଗେ ସ୍ୱାସ୍ଥ୍ୟକର୍ମୀଙ୍କୁ ପରାମର୍ଶ କରନ୍ତୁ ।
- ☑ ସ୍ୱାସ୍ଥ୍ୟକର୍ମୀଙ୍କ ପାଖକୁ ଗଲାବେଳେ କୀଟନାଶକର ଡବା ସାଙ୍ଗରେ ନିଅନ୍ତୁ ।





Digitized by srujanika@gmail.com

## କୌଣସି ଲୋକ କୀଟନାଶକ ଖାଇଦେଇଥିଲେ କ'ଣ କରିବା ଉଚିତ ?

ବେଳେବେଳେ ଲୋକେ ଆତ୍ମହତ୍ୟା କରିବା ପାଇଁ କୀଟନାଶକ ଖାଇଦେଇଥା'ନ୍ତି । ସେମାନେ କୀଟନାଶକ ବିଷାକ୍ତ ବୋଲି ଜାଣିଛନ୍ତି । କିନ୍ତୁ ଏହା ସହଜରେ ବଜାରରେ ମିଳୁଥିବାରୁ ମରିବା ପାଇଁ ଲୋକେ ଏପରି ଭୟଙ୍କର ବାଟ ବାଛି ନିଅନ୍ତି ।

ବେଳେବେଳେ ଭୁଲରେ କୀଟନାଶକ ଖାଇ ହୋଇଯାଏ । ବିଶେଷ କରି ଯଦି ଏହା କୌଣସି ତରଳ ପାନୀୟ ବୋତଲରେ ରଖାଯାଇଥାଏ ତେବେ ଏପରି ଭୁଲ ହୋଇଯାଏ । ଅନେକ ସମୟରେ ଛୋଟପିଲା ସେଥିରେ କ'ଣ ଅଛି ନଜାଣି କୌତୁହଳବଶତଃ ତାକୁ ଖାଇଦିଅନ୍ତି ।

କୀଟନାଶକ ଖାଇବାର ଦେଖିଥିଲେ ବା ସନ୍ଦେହ କରୁଥିଲେ ତଳଲିଖିତ କାମଗୁଡ଼ିକ କରିପାରିବେ:

- ☑ ପ୍ରଥମେ ଲୋକଟିକୁ ଦେହଠାରୁ ମୁଣ୍ଡ ତଳକୁ କରି ଶୁଆଇ ଦିଅନ୍ତୁ । ସେ ବାନ୍ତି କରୁଥିଲେ ତାଙ୍କୁ କଡ଼ୁଆ କରି ଶୁଆନ୍ତୁ । ଫଳରେ ନିଶ୍ୱାସ ନେବାରେ ଅସୁବିଧା ହେବନାହିଁ ।
- ☑ କନା ବା କାଗଜରେ ରୋଗୀର ପାଟିକୁ ଭଲ ଭାବରେ ସଫା କରିଦିଅନ୍ତୁ । କୃତ୍ରିମ ଦାନ୍ତ ଓ ଲାଳ କାଢ଼ିଦିଅନ୍ତୁ । ସାବଧାନ ହୁଅନ୍ତୁ ଯେପରି ଏସବୁ କରିବା ସମୟରେ ଆପଣଙ୍କ ହାତ ସଂକ୍ରମିତ ନହୁଏ । ସମ୍ଭବ ହେଲେ ରବର ଦସ୍ତାନା ପିନ୍ଧନ୍ତୁ ।
- ☑ ସଂକ୍ରମିତ ଲୁଗା ସବୁ କାଢ଼ିଦିଅନ୍ତୁ ଏବଂ ସାବୁନପାଣିରେ ରୋଗୀକୁ ଭଲ ଭାବରେ ଗାଧୋଇ ଦିଅନ୍ତୁ । ଆଖି ସଂକ୍ରମିତ ହୋଇଥିଲେ ଅଧଘଣ୍ଟା ଯାଏଁ ପରିଷ୍କାର ପାଣିରେ ତାକୁ ଧୋଇ ଦିଅନ୍ତୁ ।
- ☑ ବ୍ୟକ୍ତିର ଗଳା ପଛପଟେ ସୁଲୁସୁଲୁ କରି ବାନ୍ତି କରିବାରେ ସାହାଯ୍ୟ କରନ୍ତୁ । ସେ ଖାଇଥିବା କୀଟନାଶକ ବହୁତ ବିଷାକ୍ତ ହୋଇଥିଲେ ଏବଂ ସାଙ୍ଗେ ସାଙ୍ଗେ ଡାକ୍ତରୀ ସହାୟତା ମିଳୁନଥିଲେ ଏପରି କରନ୍ତୁ । ରୋଗୀ ଆପଣଙ୍କ ଆଙ୍ଗୁଠିକୁ କାମୁଡ଼ି ଦେଇପାରେ । ତେଣୁ ପାଟି ଖୋଲା ରଖିବା ପାଇଁ ଆରହାତରେ ଗାଲକୁ ଦାନ୍ତ ଭିତରକୁ ଚାପିଦିଅନ୍ତୁ । ମୂର୍ଚ୍ଛା ହୋଇଥିବା, ଦେହ ଥରୁଥିବା, ବା ହୃଦ୍‌ରୋଗ ଥିବା ରୋଗୀର ବାନ୍ତି କରିବା ପାଇଁ **ଚେଷ୍ଟା କରନ୍ତୁ ନାହିଁ** । ଗର୍ଭଧାରଣର ଶେଷ ଅବସ୍ଥାରେ ଥିବା ସ୍ତ୍ରୀଲୋକକୁ ମଧ୍ୟ ବାନ୍ତି କରାଇବା ପାଇଁ ଚେଷ୍ଟା କରନ୍ତୁ ନାହିଁ । ଏହାଦ୍ୱାରା ଗର୍ଭସ୍ଥ ଶିଶୁ ଉପରେ ପ୍ରଭାବ ପଡ଼ିପାରେ ।
- ☑ ପାଖରେ ଡାକ୍ତରଖାନା ଥିଲେ ରୋଗୀକୁ କୌଣସି ପ୍ରକାର ପାନୀୟ ପିଇବାକୁ ଦିଅନ୍ତୁ ନାହିଁ । ତାଲିମପ୍ରାପ୍ତ ସ୍ୱାସ୍ଥ୍ୟକର୍ମୀଙ୍କ ସହାୟତାରେ ଶୀରା ମାଧ୍ୟମରେ ତରଳ ଦେବାର ବ୍ୟବସ୍ଥା କରନ୍ତୁ । ଯଦି ଡାକ୍ତରଖାନାରେ ପହଞ୍ଚିବା ପାଇଁ ବେଶ୍ ସମୟ ଲାଗିବ, ତେବେ ରୋଗୀ ଚେତା ଥିଲେ ତାକୁ ଘଣ୍ଟାକ ଭିତରେ କେତେ ଲିଟର ପାଣି ପିଇବାକୁ ଦିଅନ୍ତୁ । ଫଳରେ ରୋଗୀ ବହୁତ ଥର ପରିସ୍ରା କରିବ । ଏହାଦ୍ୱାରା ଦେହରୁ ବିଷ ଶୀଘ୍ର ବାହାର କରାଯାଇପାରିବ । ତାଙ୍କୁ ଖାଇବାକୁ **ଦିଅନ୍ତୁ ନାହିଁ** । କ୍ଷୀର ବା ମଦ **ଦିଅନ୍ତୁ ନାହିଁ** । ଅଚେତ ଥିବା ରୋଗୀକୁ ପିଇବା ପାଇଁ **ବାଧ୍ୟ କରନ୍ତୁ ନାହିଁ** ।
- ☑ ଯେତେ ଶୀଘ୍ର ସମ୍ଭବ ଡାକ୍ତରଖାନା ନେବାର ବ୍ୟବସ୍ଥା କରନ୍ତୁ ।
- ☑ ସାଙ୍ଗରେ କୀଟନାଶକ ଡବା ବା ଲେବଲ ନେବାକୁ ଭୁଲନ୍ତୁ ନାହିଁ ।



Digitized by srujanika@gmail.com

**କୌଣସି ଲୋକ ର କୀଟନାଶକ ବିଷ ପ୍ରଭାବ ଦେଖାଯାଉଥିଲେ ମୁଁ କ'ଣ କରିପାରିବି ?**

ତାଲିମପ୍ରାପ୍ତ ସ୍ୱାସ୍ଥ୍ୟକର୍ମୀଙ୍କ ଦ୍ୱାରା କୀଟନାଶକ ଜନିତ ବିଷ ପ୍ରଭାବର ଚିକିତ୍ସା ଠିକରେ ହୋଇପାରେ । ଅବଶ୍ୟ ଡାକ୍ତରଙ୍କୁ ଅପେକ୍ଷା କରିବା ଭିତରେ ଆପଣ କିଛି କରିପାରିବେ ।

- ☑ କାମ କରୁଥିବା ଜାଗାରୁ ଲୋକଟିକୁ ବାହାରକୁ ନେଇଆସନ୍ତୁ । ନିଜେ ଯେପରି କୀଟନାଶକ ସଂସ୍ପର୍ଶରେ ନ ଆସନ୍ତି ସେଥିପ୍ରତି ସତର୍କ ରହନ୍ତୁ । ସମ୍ଭବ ହେଲେ ରବର ଦାସ୍ତାନ ପିନ୍ଧିବାକୁ ଭୁଲନ୍ତୁ ନାହିଁ ।
- ☑ କୀଟନାଶକ ଦେହରେ ଢାଳି ହୋଇଥିଲେ, ସଂକ୍ରମିତ ଲୁଗାକୁ କାଢ଼ିଦିଅନ୍ତୁ । ଦେହକୁ ସାବୁନ ଓ ପାଣିରେ ଭଲ ଭାବରେ ଧୋଇଦିଅନ୍ତୁ ।
- ☑ ରୋଗୀର ଦେହ ବହୁତ ଗରମ ଲାଗୁଥିଲେ ଥଣ୍ଡାପାଣିରେ ପୋଛି ଦିଅନ୍ତୁ । ଦେହ ବେଶୀ ଥଣ୍ଡା ଲାଗୁଥିଲେ ରୋଗୀକୁ କମ୍ବଳରେ ଘୋଡ଼େଇ ଦିଅନ୍ତୁ ।
- ☑ ରୋଗୀ ଠକଠକ ହୋଇ ଥରୁଥିଲେ ଜିଭ କାମୁଡ଼ି ହେବାରୁ ରକ୍ଷା କରିବା ପାଇଁ ଦାନ୍ତ ମଝିରେ କନା ପୂରାଇ ଦିଅନ୍ତୁ । ସାବଧାନ ହୋଇ ରୋଗୀକୁ ସମ୍ଭାଳନ୍ତୁ । ରୋଗୀକୁ ଆଘାତରୁ ରକ୍ଷା ପାଇଁ ଏପରି କରନ୍ତୁ । ବାତ ମାରୁଥିବା ଲୋକର ଗୋଡ଼ ହାତକୁ ଭିଡ଼ି ଧରିଲେ ହାଡ଼ ଭାଙ୍ଗିଯିବାର ସମ୍ଭାବନା ଥାଏ ।
- ☑ ରୋଗୀ ନିଶ୍ୱସ ପ୍ରଶ୍ୱାସ ନେଇପାରୁ ନଥିଲେ, ନିଜେ ଜାଣିଥିଲେ କୃତ୍ରିମ ଶ୍ୱାସକ୍ରିୟା କରାଇ ପାରନ୍ତି । ଏପରି କରିବା ପୂର୍ବରୁ ରୋଗୀ ପାଟିରେ କୀଟନାଶକ ନାହିଁ ବୋଲି ନିଶ୍ଚିତ ହୁଅନ୍ତୁ । ତେଣୁ ରୋଗୀର ପାଟିକୁ ଗୋଟିଏ ସଫା କନାରେ ଭଲ ଭାବରେ ପୋଛିଦିଅନ୍ତୁ । ରୋଗୀର ପାଟି ଓ ଚିକିତ୍ସା କରୁଥିବା ବ୍ୟକ୍ତିଙ୍କ ପାଟି ମଝିରେ ଗୋଟିଏ ସଫା ରୁମାଲ ମଧ୍ୟ ରଖିପାରନ୍ତି ।
- ☑ କିପରି ସଂସ୍ପର୍ଶରେ ଆସିଲେ ସେବିଷୟରେ ପଚାରନ୍ତୁ । ବ୍ୟବହାର ହୋଇଥିବା ରାସାୟନିକ ବିଷୟରେ ଜାଣନ୍ତୁ । ଡାକ୍ତରଙ୍କୁ ଦେଖାଇବା ପାଇଁ ସାଥିରେ କୀଟନାଶକର ଡବା ବା ବୋତଲ ନିଅନ୍ତୁ ।
- ☑ ବ୍ୟସ୍ତ ହୁଅନ୍ତୁ ନାହିଁ । ରୋଗୀକୁ ସାନ୍ତ୍ୱନା ଦିଅନ୍ତୁ । ସେମାନେ ବହୁତ ଅସ୍ଥିର ହୋଇପାରନ୍ତି ।
- ☑ ଯେତେ ଶୀଘ୍ର ସମ୍ଭବ ଚିକିତ୍ସାର ବ୍ୟବସ୍ଥା କରନ୍ତୁ ।






Digitized by srujanika@gmail.com

## ପ୍ରତିକାର ହେଉଛି କୀଟନାଶକ ବିଷ ପ୍ରଭାବର ଉତ୍ତମ ଚିକିତ୍ସା ।

**ପଦକ୍ଷେପ ପାଇଁ!**



ପାଖରେ ଥିବା କମ୍ପାନୀର କ୍ଲିନିକ୍, ସ୍ୱାସ୍ଥ୍ୟକର୍ମୀଙ୍କ କାର୍ଯ୍ୟାଳୟ ବା ଗୋଷ୍ଠୀ ସ୍ୱାସ୍ଥ୍ୟକେନ୍ଦ୍ରକୁ ଯାଆନ୍ତୁ ।

ସେଠାରେ କୀଟନାଶକ ବିଷ ପ୍ରଭାବର ଚିକିତ୍ସା କରିବା ପାଇଁ ଉପଯୁକ୍ତ ତାଲିମପ୍ରାପ୍ତ କର୍ମଚାରୀ ଅଛନ୍ତି କି ?

ଜରୁରୀକାଳୀନ ଚିକିତ୍ସା ପାଇଁ ଆବଶ୍ୟକ ହେଉଥିବା ଔଷଧ ଓ ଯନ୍ତ୍ରପାତି ଅଛି କି ?

ଆଗରୁ ବିଷ ଦ୍ୱାରା ଆକ୍ରାନ୍ତ ରୋଗୀର କିପ୍ରକାର ଚିକିତ୍ସା କରାଯାଇଥିଲା ?

ସେଠାକାର ସ୍ୱାସ୍ଥ୍ୟସେବାରେ ଯଦି ଆପଣ ଖୁସି ନୁହନ୍ତି, ତେବେ ତା'ର ଉନ୍ନତି ପାଇଁ କ'ଣ କରିପାରିବେ ?

କାମ କରିବା ସମୟରେ କିପରି କୀଟନାଶକର ବିଷ ପ୍ରଭାବରୁ ଦୂରେଇ ରହିବେ ତାହା ଶିଖନ୍ତୁ ।

କୀଟନାଶକର ବିକଳ୍ପ ବିଷୟରେ ଜାଣନ୍ତୁ ।



Digitized by srujanika@gmail.com




# ସତର୍କ ଦୃଷ୍ଟି ରଖନ୍ତୁ

**ଗୋଷ୍ଠୀ ଆଧାରିତ କୀଟନାଶକ ପ୍ରତି ସଜାଗ ଦୃଷ୍ଟି କ'ଣ ?**

ସାଧାରଣ ଭାବରେ ସଜାଗ ଦୃଷ୍ଟି ଅର୍ଥ ଅନୁଧ୍ୟାନ କରି କୀଟନାଶକ ଯୋଗୁ ଉପୁଜୁଥିବା ସମସ୍ୟାଗୁଡ଼ିକୁ ଲେଖିରଖିବା । ସ୍ଥାନୀୟ ସ୍ତରରେ ଜନସାଧାରଣ, କମ୍ପାନୀ ଓ ସରକାର କ'ଣ କରୁଛନ୍ତି ସେ ବିଷୟରେ ମଧ୍ୟ ଜାଣିବା ।

**ଗୋଷ୍ଠୀ ନିରୀକ୍ଷଣ ଦ୍ୱାରା କ'ଣ ହୋଇପାରିବ:**

ଲୋକେ କୀଟନାଶକର କୁପ୍ରଭାବ ଜାଣିପାରିଲେ, ସେମାନେ ହୁଏତ ଏହାର ବ୍ୟବହାର ବନ୍ଦ କରିବେ ବା କମାଇଦେବେ ।

ଆପଣମାନେ ଏକାଠି ମିଶି କୀଟନାଶକ ଯୋଗୁଁ ଜୀବନ ଓ ପରିବେଶ ଉପରେ ହେଉଥିବା କ୍ଷତି ସମ୍ପର୍କରେ ତଥ୍ୟ ଏକାଠି କରନ୍ତୁ । ତାହେଲେ ଲୋକମାନେ କୀଟନାଶକ ବ୍ୟବହାର ଛାଡ଼ି ବିକଳ୍ପ ବ୍ୟବସ୍ଥାକୁ ଗ୍ରହଣ କରିବା ପାଇଁ ଚିନ୍ତା କରିପାରନ୍ତି ।

ତଳ ସୂଚନା ଦେଇ ସରକାରଙ୍କୁ ମଧ୍ୟ ବାଧ୍ୟ କରାଯାଇପାରେ:

- କୀଟନାଶକ ବ୍ୟବହାରକୁ ପ୍ରୋତ୍ସାହିତ କରୁଥିବା ନିୟମକୁ ବଦଳାଇବାରେ ଏବଂ
- ଶିଳ୍ପାନୁଷ୍ଠାନକୁ ଅଧିକ ପ୍ରଭାବଶାଳୀ ଭାବରେ ନିୟନ୍ତ୍ରଣ କରିବାରେ ।



Digitized by srujanika@gmail.com

### ଗୋଷ୍ଠୀକୁ କୀଟନାଶକ ପ୍ରଭାବିତ କରୁଛି ବୋଲି କିପରି ଜାଣିବା ?

ଗୋଷ୍ଠୀ ତରଫରୁ ସଜାଗ ଦୃଷ୍ଟି ରଖିଲେ କୀଟନାଶକର ପ୍ରଭାବ ବିଷୟରେ ଜାଣିହେବ । ସଜାଗ ଦୃଷ୍ଟି ରଖିବା ପାଇଁ ଅନେକ ବାଟ ଅଛି । ନିର୍ଦ୍ଦିଷ୍ଟ ଭାବରେ ଓ ନିୟନ୍ତ୍ରିତ ଢଙ୍ଗରେ ସବିଶେଷ ବିବରଣୀ ସଂଗ୍ରହ କରାଯାଇପାରେ କିମ୍ବା ମୋଟାମୋଟି ଧାରଣା ପାଇବା ପାଇଁ ସାଧାରଣ ଭାବରେ ସୂଚନା ସଂଗ୍ରହ କରାଯାଇପାରେ ।

କିଛି ଦଳ କୀଟନାଶକର ବ୍ୟବହାର, ପ୍ରୟୋଗର ଧାରା, ସ୍ୱାସ୍ଥ୍ୟ ସମସ୍ୟା ଆଦି ଉପରେ ତଥ୍ୟ ସଂଗ୍ରହ ପାଇଁ ପ୍ରଶ୍ନାବଳୀ ବ୍ୟବହାର କରନ୍ତି । ପରିଶିଷ୍ଟ ୧ ଓ ୨ ଦେଖନ୍ତୁ ।

ଏହା ସହିତ କୀଟନାଶକ ସହ କାମ କରୁଥିବା କର୍ମୀଙ୍କ ସହ ମିଶି ପ୍ରତିଦିନର ସ୍ୱାସ୍ଥ୍ୟ ତଥ୍ୟ ଲେଖିବା ପାଇଁ ଫର୍ଦ୍ଦଟିଏ (ପରିଶିଷ୍ଟ ୩) ତିଆରି କରିଛନ୍ତି । କୀଟନାଶକ ନେଇ କାମ କରୁଥିବା କର୍ମୀମାନେ ବିଷର କିଛି ଲକ୍ଷଣ ଦେଖାଗଲେ ତାକୁ ଟିପି ରଖିପାରିବେ । ଫଳରେ ସେମାନେ ନିଜେ ସେମାନଙ୍କର ସ୍ୱାସ୍ଥ୍ୟ ବିଷୟରେ ସଚେତନ ରହିପାରିବେ । ଏଗୁଡ଼ିକୁ ଏକାଠି କଲେ ବହୁତ ଗୁରୁତ୍ତ୍ୱପୂର୍ଣ୍ଣ ତଥ୍ୟ ମିଳିଥାଏ ।

ଫିଲିପାଇନସ୍‌ରେ କୀଟନାଶକ ପ୍ରୟୋଗକାରୀଙ୍କ ସ୍ୱାସ୍ଥ୍ୟ ଉପରେ ସଜାଗ ଦୃଷ୍ଟି ରଖିବା ଆରମ୍ଭ କରାଯାଇଛି । ମାଲେସିଆରେ ମଧ୍ୟ ଗୋଟିଏ ସ୍ଥାନୀୟ ଦଳ ରକ୍ତରେ କୋଲିନଷ୍ଟେରେଜ୍‌ର ସ୍ତର ମାପିବା ଆରମ୍ଭ କରିଛନ୍ତି ।

### ଗୋଷ୍ଠୀ କ'ଣ ନିରୀକ୍ଷଣ କରିବ:

- ଯଦି କୀଟନାଶକ ପ୍ରୟୋଗକାରୀ ଅସୁସ୍ଥ ମନେକରନ୍ତି ତେବେ ସେବୁର ଲକ୍ଷଣ କ'ଣ ।
- ଗୋଷ୍ଠୀ କିପରି ସଂସ୍ପର୍ଶରେ ଆସେ ।
- ଆପଣ ଓ ଆପଣଙ୍କ ଗୋଷ୍ଠୀ କୀଟନାଶକ ବ୍ୟବହାର ସମ୍ପର୍କରେ କ'ଣ ଚିନ୍ତା କରନ୍ତି ।
- ସେଠାରେ କୀଟନାଶକ ବିଷ ପ୍ରଭାବର କୌଣସି ଘଟଣା ବା ମୃତ୍ୟୁ ହୋଇଛି କି ।
- କେଉଁ କୀଟନାଶକ ସବୁ ବ୍ୟବହାର ହେଉଛି ।
- ନିଷେଧ ହୋଇଥିବା ବା ବିନା ପଞ୍ଜିକୃତ କୌଣସି କୀଟନାଶକ ବ୍ୟବହାର ହେଉଛି କି ।
- କୀଟନାଶକଗୁଡ଼ିକ ଠିକ ଭାବରେ ପ୍ୟାକେଜ୍ ଓ ଲେବଲ କରାହୋଇଛି କି ।
- ଗୋଷ୍ଠୀରେ କିଏ କୀଟନାଶକ ବ୍ୟବହାର କରନ୍ତି ଏବଂ କେଉଁ କୀଟନାଶକ କିଣା ହୋଇ ବ୍ୟବହାର ହେବ ବୋଲି କିଏ ନିଷ୍ପତ୍ତି ନିଅନ୍ତି ।
- କୀଟନାଶକଗୁଡ଼ିକ କିପରି ବିକ୍ରି, ସ୍ଥାନାନ୍ତରିତ, ମିଶ୍ରଣ ଏବଂ ପ୍ରୟୋଗ କରାଯାଉଛି ।
- ଖାଲି ଡବାଗୁଡ଼ିକ କିପରି ନଷ୍ଟ କରାଯାଏ ।
- କୀଟନାଶକ କମ୍ପାନୀଗୁଡ଼ିକ ସେମାନଙ୍କ ଉତ୍ପାଦର ବିଜ୍ଞାପନ ଓ ବିକ୍ରି କିପରି କରୁଛନ୍ତି ।
- କୀଟନାଶକର କୌଣସି ସଫଳ ବିକଳ୍ପ ବ୍ୟବସ୍ଥା ଅଛି କି ।



Digitized by srujanika@gmail.com

## ଉଦାହରଣ: ମହିଳା କୀଟନାଶକ ସିଞ୍ଚନକାରୀଙ୍କ ସ୍ୱାସ୍ଥ୍ୟ ଉପରେ ପ୍ରଭାବ

ମାଲେସିଆର ବୃକ୍ଷରୋପଣ ବିଭାଗରେ ପ୍ରାୟ ସବୁଦିନ ମହିଳାମାନେ କୀଟନାଶକ ପ୍ରୟୋଗ କରିଥା'ନ୍ତି । ମହିଳାଙ୍କ ସ୍ୱାସ୍ଥ୍ୟ ଉପରେ କୀଟନାଶକର ପ୍ରଭାବ ଜାଣିବା ପାଇଁ ମାଲେସିଆର ଟେନାଗନିଟା ମହିଳାଙ୍କ ସ୍ୱାସ୍ଥ୍ୟ ନିରୀକ୍ଷଣ ପ୍ରକଳ୍ପ ଆରମ୍ଭ କଲା । ପାନ୍ ଆପ୍ ଏବଂ ବିଜ୍ଞାନ ବିଶ୍ୱବିଦ୍ୟାଳୟ ମାଲେସିଆର ଜାତୀୟ ବିଷ କେନ୍ଦ୍ର ସହ ମିଳିତ ଭାବରେ ଏହା ଆରମ୍ଭ କରାଯାଇଥିଲା । ଏହି ଅଧ୍ୟୟନରେ ୧୦୦ରୁ ଅଧିକ ମହିଳା କର୍ମୀଙ୍କୁ ସାମିଲ କରାଯାଇଥିଲା । ଟେନାଗନିଟାର କର୍ମୀମାନେ ବୃକ୍ଷରୋପଣ ଜାଗାକୁ କେତେ ଥର ଯାଇ କୀଟନାଶକ ପ୍ରୟୋଗ କରୁଥିବା ମହିଳାମାନଙ୍କୁ ଚିହ୍ନଟ କଲେ । ସେମାନେ ତାଙ୍କ ସହିତ ପ୍ରକଳ୍ପ ବିଷୟରେ ଆଲୋଚନା କଲେ । କର୍ମୀମାନେ କୀଟନାଶକ ସଂସ୍ପର୍ଶରେ ଆସିବା ଏବଂ କୌଣସି ସ୍ୱାସ୍ଥ୍ୟଗତ ଲକ୍ଷଣ (ପରିଶିଷ୍ଟ ୨ଦେଖନ୍ତୁ) ବିଷୟରେ ପଚାରି ବୁଝିଥିଲେ । ଏହା ସହିତ କୋଲିନଷ୍ଟେରେଜ୍ ସ୍ତର ପାଇଁ ରକ୍ତ ନମୁନା ମଧ୍ୟ ସଂଗ୍ରହ କରାଗଲା । ବିଷ କେନ୍ଦ୍ର ସର୍ବେକ୍ଷଣର ଫଳାଫଳକୁ ଏକାଠି କରିବା ସହ ରକ୍ତ ପରୀକ୍ଷା କଲା । ଯେଉଁ କର୍ମୀଙ୍କର କୋଲିନଷ୍ଟେରେଜ୍‌ର ସ୍ତର କମ୍ ଥିଲା ସେମାନଙ୍କୁ ପୁଣି ଥରେ ପରୀକ୍ଷା କରାଗଲା ।

ମାଲେସିଆ ଉପଦ୍ୱୀପର ଦୁଇଟି ସ୍ଥାନରେ ଏହି ସର୍ବେକ୍ଷଣ କରାଯାଇଥିଲା । ପ୍ରାୟ ୧୦୦ ଜଣ ମହିଳା କୀଟନାଶକ ପ୍ରୟୋଗକାରୀ ଏଥିରେ ଭାଗ ନେଇଥିଲେ । କେତେକ କ୍ଷେତ୍ରରେ ମହିଳାମାନେ ଗର୍ଭବତୀ ଥିବା ସମୟରେ ମଧ୍ୟ ପ୍ରୟୋଗ କରିଥିବାର ଦେଖାଗଲା । ପ୍ରାଥମିକ ଫଳାଫଳରୁ ମହିଳାମାନଙ୍କର କୋଲିନଷ୍ଟେରେଜ୍ ସ୍ତର ବେଶ୍ କମ୍ ଥିବା ଜଣାପଡ଼ିଲା । କୀଟନାଶକ ପ୍ରୟୋଗ କରିବା କାମ ବନ୍ଦ କରିଦେବା ଫଳରେ ଏହା ପୁଣି ଥରେ ସାଧାରଣ ସ୍ତରକୁ ଫେରି ଆସିଲା । ଏହି ଫଳାଫଳକୁ ନେଇ ପ୍ରୟୋଗକାରୀଙ୍କ ସହ ଆଲୋଚନା କରାଗଲା ।

ଏବେ ଏମାନେ ନିଜେ ନିଜର ସ୍ୱାସ୍ଥ୍ୟ ଅବସ୍ଥା ପ୍ରତି ଦୃଷ୍ଟି ଦେଲେ । କେଉଁ କୀଟନାଶକ ପ୍ରୟୋଗ କରୁଛନ୍ତି ଏବଂ କିଛି ଲକ୍ଷଣ ଅନୁଭବ କରୁଛନ୍ତି କି (ପରିଶିଷ୍ଟ ୩ ଦେଖନ୍ତୁ) ଆଦି ଲକ୍ଷ୍ୟ କଲେ । ଫଳରେ କୀଟନାଶକ ପ୍ରୟୋଗର ସ୍ୱାସ୍ଥ୍ୟ ଉପରେ କି ପ୍ରକାର ପ୍ରଭାବ ଅଛି ସହଜରେ ଜାଣିହେବ । ଟେନାଗନିଟା କର୍ମୀମାନଙ୍କ ପାଇଁ ନିୟମିତ ପ୍ରଶିକ୍ଷଣ କର୍ମଶାଳା ସବୁ କରୁଛନ୍ତି । ଏଥିରେ କୀଟନାଶକର ସ୍ୱାସ୍ଥ୍ୟ ପ୍ରତି ଥିବା କୁପ୍ରଭାବ, କର୍ମୀ ଭାବରେ ସେମାନଙ୍କ ଅଧିକାର ତଥା ମହିଳା କର୍ମୀ ଭାବରେ ସେମାନଙ୍କ ସମସ୍ୟା ବିଷୟରେ ଆଲୋଚନା କରାହୁଏ । ଟେନାଗନିଟା କରିଥିବା ଅଧ୍ୟୟନର ଫଳାଫଳ ବିଷୟରେ ମଧ୍ୟ ଜଣାଇଥା'ନ୍ତି ଏବଂ ସମସ୍ତେ ମିଶି କିଛି ସୁପାରିଶ କରିଥା'ନ୍ତି ।

ଏହି ସର୍ବେକ୍ଷଣରେ ବୃକ୍ଷରୋପଣ ପରିଚାଳକ ଗୋଷ୍ଠୀଙ୍କଠାରୁ ସେତେଟା ସହଯୋଗ ମିଳିନଥିଲା । ଏହି ସର୍ବେକ୍ଷଣରେ ସାମିଲ ହୋଇଥିବାରୁ କେତେଜଣ କର୍ମୀଙ୍କ ଚାକିରି ଚାଲିଗଲା । ଏଥିପାଇଁ ସେମାନେ ତାଙ୍କର ରକ୍ତ ନମୁନା ଦେବା ପାଇଁ ସହଜରେ ରାଜି ହୋଇନଥିଲେ ।

ଏହି ପ୍ରକଳ୍ପର ସବୁଠାରୁ ବଡ଼ ସଫଳତା ହେଉଛି କୀଟନାଶକ ପ୍ରୟୋଗକାରୀମାନେ ନିଜର ମୂଲ୍ୟ ବୁଝିପାରିଛନ୍ତି । କେହି ଜଣେ ବାହାର ଲୋକ ତାଙ୍କର ସ୍ୱାସ୍ଥ୍ୟ ଓ ଭଲ ପାଇଁ ଚିନ୍ତା କରୁଥିବା କଥାଟା ଅନେକଙ୍କ ପାଇଁ ନୂଆ । ଏହା ସେମାନଙ୍କୁ ତାଙ୍କ ଜୀବନଶୈଳୀ ତଥା କାମ ପରିସ୍ଥିତିରେ ଉନ୍ନତି ଆଣିବା ପାଇଁ ସାହସ ଆଣିଦେଇଛି ।

ଏହି ଫଳାଫଳ କର୍ମୀମାନଙ୍କୁ ସୂଚନା ଦେବାରେ ସାହାଯ୍ୟ କରିବ ଏବଂ ସେମାନଙ୍କ ସ୍ୱାସ୍ଥ୍ୟ ପ୍ରତି ସଜାଗ ରହିବା ପାଇଁ ଉତ୍ସାହିତ କରିବ । ଆହୁରି ମଧ୍ୟ ଏହି ଫଳାଫଳ କୀଟନାଶକ ଉପରେ ଆହୁରି ଶକ୍ତିଶାଳୀ ନିୟନ୍ତ୍ରଣ ବ୍ୟବସ୍ଥା କରିବା ପାଇଁ ଏବଂ କୀଟନାଶକ ପ୍ରୟୋଗକାରୀଙ୍କ ସ୍ୱାସ୍ଥ୍ୟ ପ୍ରତି ଯତ୍ନବାନ ହେବା ପାଇଁ ସରକାରଙ୍କୁ ବାଧ୍ୟ କରିବ ।



Digitized by srujanika@gmail.com

## ଆମେ ନିରୀକ୍ଷଣ କିପରି ଆରମ୍ଭ କରିବୁ ?

ଏକାଠି ବସନ୍ତୁ ।

ଆପଣଙ୍କ ଗୋଷ୍ଠୀ ପାଇଁ କ'ଣ ବେଶୀ ଜରୁରୀ ସ୍ଥିର କରନ୍ତୁ ।

ଆପଣଙ୍କ ଗୋଷ୍ଠୀ କେଉଁ ସୂଚନାସବୁ ଏକାଠି କରିପାରିବ ତାହା ସ୍ଥିର କରନ୍ତୁ । ସାଧାରଣତଃ ଏଥିରେ ସବୁବେଳେ ତାରିଖ, ନାମ ଓ କୀଟନାଶକ ବା ଘଟଣା (ଉଦାହରଣ ସ୍ୱରୂପ, କୀଟନାଶକ ଯୋଗୁଁ ବିଷ ପ୍ରଭାବ) ଯୋଡ଼ା ହୋଇଥାଏ ।

ଆପଣ ପ୍ରଥମେ କୀଟନାଶକର ସ୍ୱାସ୍ଥ୍ୟ ଉପରେ ପ୍ରଭାବ ଜାଣିବା ପାଇଁ ପ୍ରଶ୍ନାବଳୀ ବ୍ୟବହାର କରିପାରନ୍ତି । ପରିଶିଷ୍ଟ ୧ ଦେଖନ୍ତୁ । ଏହି ପ୍ରଶ୍ନାବଳୀ ପାନ୍ ଫିଲିପାଇନ୍‌ସ ଦ୍ୱାରା ପ୍ରସ୍ତୁତ ଓ ବ୍ୟବହୃତ । ପରିଶିଷ୍ଟ ୨ର ପ୍ରଶ୍ନାବଳୀ ଟେନାଗନିଟା ଦ୍ୱାରା ବ୍ୟବହୃତ । ଏଥିରେ ବୃକ୍ଷରୋପଣ ବିଭାଗରେ କୀଟନାଶକ ପ୍ରୟୋଗ କରୁଥିବା ମହିଳା କର୍ମୀଙ୍କ ସ୍ୱାସ୍ଥ୍ୟ ସମ୍ପର୍କରେ ସୂଚନା ଏକାଠି କରାଯାଇଥିଲା ।

ଏହି ପ୍ରଶ୍ନାବଳୀ ଆପଣଙ୍କୁ ବାଟ ଦେଖାଇବ । ଆପଣ ଏହି ପ୍ରଶ୍ନାବଳୀରୁ ଦରକାରୀ ଅଂଶକୁ ଏକାଠି କରି ଆପଣଙ୍କ ନିଜର ପ୍ରଶ୍ନାବଳୀ କରିପାରିବେ । ଏହା ଆପଣଙ୍କ ଗୋଷ୍ଠୀ କୀଟନାଶକ ସଂସ୍ପର୍ଶରେ ଆସିବାର ପରିସ୍ଥିତି ଉପରେ ନିର୍ଭର କରିବ ।

କର୍ମୀର ପ୍ରତିଦିନର ସ୍ୱାସ୍ଥ୍ୟ ତଥ୍ୟ ରଖିବା (ପରିଶିଷ୍ଟ ୨) ମଧ୍ୟ ଲାଭଦାୟକ । ମନେରଖନ୍ତୁ - ଯେକୌଣସି ଦରକାରୀ ସୂଚନାକୁ ଯେଉଁଦିନ ହୋଇଥିବ ସେହି ଦିନ ଲେଖିବା ଜରୁରୀ, ଯଥା: ବାନ୍ତି ଲାଗିବା ।

ଅନୁଧ୍ୟାନ ମଧ୍ୟ ଗୁରୁତ୍ୱପୂର୍ଣ୍ଣ । କୀଟନାଶକ ବ୍ୟବହାର ହେଉଥିବା ସମୟରେ ଗୋଷ୍ଠୀର ସାଧାରଣ ସ୍ୱାସ୍ଥ୍ୟ ଅବସ୍ଥା ଟିପି ରଖିବା ଦରକାର । ଅସ୍ୱାଭାବିକ ଭାବରେ ଚମଡ଼ାରେ ଫଳିଯିବା ବା ମୁର୍ଚ୍ଛା ହେବା, ଏପରିକି କର୍କଟରୋଗ ହେବା ବା ମହିଳାଙ୍କର ବାରମ୍ବାର ଗର୍ଭନଷ୍ଟ ହେବା ଭଳି ଘଟଣାକୁ ନାଁ ଓ ତାରିଖ ସହିତ ଟିପି ରଖିବା ଉଚିତ ।





Digitized by srujanika@gmail.com

### ତା'ପରେ କ'ଣ ?

ପ୍ରଥମେ ନିଜ ଦଳ ଭିତରେ ତଥ୍ୟକୁ ବିଶ୍ଳେଷଣ କରନ୍ତୁ । ସ୍ଥାନୀୟ ବା ଜାତୀୟ ସରକାରଙ୍କ ପାଖରେ ଆପଣଙ୍କ ଯୁକ୍ତି ଉପସ୍ଥାପନ କରିବା ପାଇଁ ଏହା ସହାୟକ ହେବ ।

ତା'ପରେ ଏହି ସୂଚନାକୁ ଆପଣଙ୍କ ସ୍ଥାନୀୟ ଅନୁଷ୍ଠାନକୁ ପଠାନ୍ତୁ । ସେମାନେ ଦେଶର ବିଭିନ୍ନ ଗୋଷ୍ଠୀଙ୍କଠାରୁ ଏହି ପ୍ରକାର ସୂଚନା ଏକାଠି କରୁଛନ୍ତି ଏବଂ ଏସିଆର ଅନ୍ୟ ଦେଶର ଦଳଙ୍କ ସହ ମିଶି କାମ କରୁଛନ୍ତି ।

କେବଳ ଦଳମାନଙ୍କ ସହ ତଥ୍ୟ ବିନିମୟ ଯଥେଷ୍ଟ ନୁହେଁ । ସେମାନେ ଆପଣଙ୍କ ଦଳକୁ ଦରକାରୀ ବିଷୟ ଓ ଯୋଜନା ତଥା କାର୍ଯ୍ୟକ୍ରମ ବିଷୟରେ ସଦ୍ୟତମ ତଥ୍ୟ ଦେଇଚାଲିବେ ।

ଆପଣଙ୍କ ଦଳ ଗୋଟିଏ ଆନ୍ତର୍ଜାତୀୟ ଦଳର ଅଂଶ ହୋଇପାରିବ ।

---

**ପଦକ୍ଷେପ ପାଇଁ!**



**ଆପଣଙ୍କ ଦଳକୁ କୀଟନାଶକ ନିରୀକ୍ଷଣ କାମରେ ସାମିଲ କରାନ୍ତୁ ।**

**ଏସୀୟ ଅଭିଯାନରେ ସାମିଲ ହୁଅନ୍ତୁ ।**

---






Digitized by srujanika@gmail.com

## ଏକାଠି ଆମେ ବଦଳାଇ ପାରିବା

ଆପଣଙ୍କ ଗୋଷ୍ଠୀ ଏକା ନୁହେଁ ।

ଆପଣଙ୍କ ଦେଶ ଏବଂ ସାରା ଏସିଆର ଚାଷୀ, କର୍ମୀ ଓ ମହିଳାମାନଙ୍କ ଦଳ କୀଟନାଶକ ଓ ଚାଷ ସଂପର୍କିତ ସୂଚନା ଏକାଠି କରିବାରେ ମିଳିମିଶି କାମ କରୁଛନ୍ତି ।

ଏସବୁ ତଥ୍ୟ ଏକାଠି କରାହୋଇ ପ୍ରତି ଦେଶ ଏବଂ ପୂରା ଅଞ୍ଚଳ ପାଇଁ ସଜଡ଼ା ହୋଇ ରଖାଯାଉଛି । ଯଦି ଆମ ପାଖରେ ନାଁ, ତାରିଖ ଏବଂ କୀଟନାଶକର ସ୍ୱାସ୍ଥ୍ୟ ଉପରେ ପଡ଼ୁଥିବା ପ୍ରତିକୂଳ ପ୍ରଭାବ ବିଷୟରେ ବିଭିନ୍ନ ଦେଶରୁ ଶହ ଶହ ବିବରଣୀ ଆସି ରହେ, ତେବେ ରାଜନୀତିକ ନେତାମାନେ ବି ଆମ କଥା ଶୁଣିବାକୁ ବାଧ୍ୟ ହେବେ ।






Digitized by srujanika@gmail.com

**ଶେଷରେ ଆମେ କ'ଣ ଆଶା କରିବା ?**

ଆମେ ଆଶା କରିବା ଯେ କୀଟନାଶକର ବିଷ ଦ୍ୱାରା କେହି ପ୍ରଭାବିତ ନହୁଅନ୍ତୁ । ଆମେ ଆଶା କରିବା ଗୋଷ୍ଠୀ ନିରୀକ୍ଷଣ ଦ୍ୱାରା ଶକ୍ତିଶାଳୀ ଚାଷୀ ଦଳ ଓ ଜନ ସଂଗଠନ ତିଆରି ହେବ । କୀଟନାଶକ ପ୍ରସ୍ତୁତି, ବିକ୍ରି ଓ ବ୍ୟବହାର ଉପରେ ଉନ୍ନତମାନର ନିୟନ୍ତ୍ରଣ ବ୍ୟବସ୍ଥା ପାଇଁ ଚାପ ପକାଇବା ପାଇଁ ଏକାଠି କାମ କରାଯିବ ।

ଆମେ ଯଥେଷ୍ଟ ତଥ୍ୟ ଏକାଠି କରିବା ଯେପରି ଯେଉଁ କୀଟନାଶକକୁ ମନା କରିବା ଅସମ୍ଭବ ଭଳି ମନେହେଉଛି ତାକୁ ନିଷେଧ କରିବା ବା ନିୟନ୍ତ୍ରଣ କରିବା ପାଇଁ ସରକାରଙ୍କୁ ବାଧ୍ୟ କରିପାରିବା

ଆମେ ଚାହୁଁଛୁ ଯେଉଁ କୀଟନାଶକଗୁଡ଼ିକ ଚାଷୀ, କର୍ମୀ, ଜନସାଧାରଣ ଏବଂ ସେମାନଙ୍କ ପରିବେଶକୁ ବିଷାକ୍ତ କରୁଛି ସେହିସବୁକୁ କମ୍ପାନୀ ପ୍ରସ୍ତୁତ କରିବା ଏବଂ  ବିକ୍ରି କରିବା ବନ୍ଦ କରୁ ।  କମ୍ପାନୀ ଏଥିପାଇଁ ଉତ୍ତରଦାୟୀ ରହିବା ପାଇଁ ଆମେ ସମସ୍ତେ ଏକାଠି କାମ କରିବା ।

**ଆପଣଙ୍କ ଦଳକୁ କୀଟନାଶକ ନିରୀକ୍ଷଣରେ ସାମିଲ କରାନ୍ତୁ ।**

**ଏସୀୟ ଅଭିଯାନରେ ସାମିଲ ହୁଅନ୍ତୁ ।**





Digitized by srujanika@gmail.com

## ପରିଶିଷ୍ଟ-୧: କୀଟନାଶକର ସ୍ୱାସ୍ଥ୍ୟ ଉପରେ ପ୍ରଭାବର ଗୋଷ୍ଠୀ ନିୟନ୍ତ୍ରଣ

୧. କୀଟନାଶକ ଦ୍ୱାରା ପ୍ରଭାବିତ ବ୍ୟକ୍ତିଙ୍କ ନାମ: ____________________

୨. ଠିକଣା: ____________________

୩. ବୟସ: __________, ପୁରୁଷ: __________, ମହିଳା:__________, ଗର୍ଭବତୀ: __________

୪. ପ୍ରଭାବିତ ବ୍ୟକ୍ତି ଜଣକ ଚାଷ କରୁଥିବା ଜମିର ମାଲିକ କି ? ☐ ହଁ ☐ ନାଁ

୫. କେଉଁ ତାରିଖରେ କୀଟନାଶକର ପ୍ରତିକୂଳ ପ୍ରଭାବ ପଡ଼ିଲା ____________________

୬. କୀଟନାଶକର କିପ୍ରକାର ପ୍ରତିକୂଳ ପ୍ରଭାବ ପଡ଼ିଥିଲା? (କ'ଣ ଘଟିଲା, ଲକ୍ଷଣ ଆଦି ସଂକ୍ଷେପରେ କୁହ)

____________________

୭. କୀଟନାଶକର ନାଁ କ'ଣ? ____________________

୮. ପ୍ରଭାବିତ ଲୋକ ଜଣକ ହିଁ କୀଟନାଶକ ବ୍ୟବହାର କରୁଥିଲା କି ? ☐ ହଁ ☐ ନାଁ

୯. ପ୍ରୟୋଗକାରୀ ଦସ୍ତାନା, ମୁଖା ବା ଅନ୍ୟ କିଛି ସୁରକ୍ଷାକାରୀ ପୋଷାକ ପିନ୍ଧିଥିଲେ କି ? ☐ ହଁ ☐ ନାଁ

୧୦. ପ୍ରଭାବିତ ବ୍ୟକ୍ତି ଜଣକ କିପରି କୀଟନାଶକ ସଂସ୍ପର୍ଶରେ ଆସିଲେ ?

- କ. ପ୍ରୟୋଗ କରିବା ବେଳେ
- ଖ. କୀଟନାଶକ ମିଶାଇବା ବେଳେ
- ଗ. କୀଟନାଶକ ବିଛାଇବା ବେଳେ
- ଘ. ସଂକ୍ରମିତ ଖାଦ୍ୟ ଖାଇବା ଫଳରେ
- ଙ. ପାଣି କାଦୁଅ ଚକଟିଲା ବେଳେ
- ଚ. ଅନ୍ୟାନ୍ୟ

୧୧. କୀଟନାଶକ ପ୍ରଭାବିତ ବ୍ୟକ୍ତିର କ'ଣ ହେଲା ?

- କ. ମରିଗଲା
- ଖ. ଗୁରୁତର ଅବସ୍ଥାରେ ବିଛଣାରେ ପଡ଼ିଛି
- ଗ. ସେମିତି କିଛି ଗୁରୁତର ହୋଇନାହିଁ
- ଘ. ଡାକ୍ତରଖାନାକୁ ଅଣାଗଲା
- ଙ. ଅନ୍ୟାନ୍ୟ

୧୨. ଲକ୍ଷଣ ଜଣାପଡ଼ିବାର କେତେ ଦିନ ପୂର୍ବରୁ କୀଟନାଶକ ସଂସ୍ପର୍ଶରେ ଆସିଥିଲେ ?

- କ. ସାଙ୍ଗେ ସାଙ୍ଗେ
- ଖ. କିଛି ଘଣ୍ଟା ପରେ
- ଗ. ଦିନକ ପରେ
- ଘ. ଦିନକରୁ ଅଧିକ ସମୟ ପରେ

୧୩. କୀଟନାଶକର ପ୍ରଭାବ କେତେ ସମୟ ରହିଲା ?

- କ. କିଛି ମିନିଟ
- ଖ. କିଛି ଘଣ୍ଟା
- ଗ. ଦିନେ
- ଘ. ଦିନକରୁ ଅଧିକ



Digitized by srujanika@gmail.com

୧୪. ପ୍ରଭାବିତ ବ୍ୟକ୍ତି ଜଣକ କେତେ ଅଧିକ କୀଟନାଶକ ସଂସ୍ପର୍ଶରେ ଆସୁଥିଲା?

କ. ପ୍ରାୟ ପ୍ରତିଦିନ　　ଘ. ମାସକୁ ଥରକରୁ କମ୍

ଖ. ସାପ୍ତାହିକ　　ଙ. କେବେ କେମିତି

ଗ. ମାସିକ

୧୫. ପ୍ରଭାବିତ ବ୍ୟକ୍ତି ପୂର୍ବରୁ ସେହି ପ୍ରକାର ଅସୁବିଧା ଭୋଗିଥିଲେ କି ? □ ହଁ □ ନାଁ

୧୬. କୀଟନାଶକ ପ୍ରଭାବିତ ହେବା ପୂର୍ବରୁ ବ୍ୟକ୍ତି ଜଣକଙ୍କୁ କୌଣସି ରୋଗ ହୋଇଥିଲା କି ? □ ହଁ □ ନାଁ

୧୭. ଯଦି ହଁ, ତେବେ କେଉଁ ରୋଗ ?

୧୮. କୀଟନାଶକ ପ୍ରଭାବିତ ହେବା ଆଗରୁ ଔଷଧ ଖାଉଥିଲେ କି ? □ ହଁ □ ନାଁ

୧୯. ଯଦି ହଁ, ତେବେ କେଉଁ ଔଷଧ ବ୍ୟବହାର କରୁଥିଲା ____________

୨୦. କୀଟନାଶକ ବିଷ ପ୍ରଭାବିତ ବ୍ୟକ୍ତି ଜଣକ ଧୂମପାନ କରୁଥିଲେ କି ?

କ. ନାଁ,　　ଖ. ଦିନକୁ ୧-୧୦ଟି ସିଗାରେଟ୍,　　ଗ. ଦିନକୁ ୧୦ଟିରୁ ଅଧିକ

୨୧. ସେ ମଦ ପିଉଥିଲେ କି ?

କ. ନାଁ,　ଖ. ପ୍ରାୟ ପ୍ରତିଦିନ,　ଗ. ସପ୍ତାହରେ ଅଳ୍ପ କେଇଥର,　ଘ. ମାସକୁ ଅଳ୍ପ କେଇଥର

୨୨. କୀଟନାଶକ ପ୍ରଭାବିତ ହେବା ପୂର୍ବରୁ ବ୍ୟକ୍ତି ଜଣକ ମଦ ପିଇଥିଲେ କି ?　□ ହଁ □ ନାଁ

୨୩. ଅନ୍ୟ କୌଣସି କାରଣରୁ କୀଟନାଶକ ବିଷର ଲକ୍ଷଣ ଦେଖାଦେଇ ଥାଇପାରେ ?　□ ହଁ □ ନାଁ

୨୪. ଯଦି ହଁ, ତେବେ କ'ଣ ?

ଏହି ବିବରଣୀ ପ୍ରସ୍ତୁତ କରିଥିବା ବ୍ୟକ୍ତିଙ୍କ ନାଁ :

ଠିକଣା:

ଅନୁଷ୍ଠାନ:

ବିବରଣୀ ପ୍ରସ୍ତୁତ ହେବାର ତାରିଖ:



Digitized by srujanika@gmail.com

## ପରିଶିଷ୍ଟ- ୨: ବିଷଚକ୍ରକୁ ସାମନା କରୁଥିବା ମହିଳା

### ବୃକ୍ଷରୋପଣରେ କୀଟନାଶକ ପ୍ରୟୋଗ ଉପରେ ପ୍ରଶ୍ନାବଳୀ

ନାମ:

ସ୍ଥାନ:

***ବ୍ୟକ୍ତିଗତ ବିବରଣୀ:***

ଲିଙ୍ଗ: ———— ବୟସ: ———— ଜାତି: ————

ବୈବାହିକ ସ୍ଥିତି: ———— ସ୍ୱାମୀ/ସ୍ତ୍ରୀଙ୍କ ବୃତ୍ତି: ————

ପିଲା ସଂଖ୍ୟା: ———— କି କାମ କରନ୍ତି: ————

କେତେଦିନ କାମ କଲେଣି ———— ଦରମା: ————

ଆପଣ ଜଣେ: ☐ ସବୁଦିନିଆ କର୍ମୀ ☐ ଚୁକ୍ତିବଦ୍ଧ କର୍ମୀ ☐ ଅସ୍ଥାୟୀ କର୍ମୀ

କାମ କରୁଥିବା ସମୟ (କେତେଘଣ୍ଟା କାମ କରନ୍ତି): ☐ ପ୍ରତିଦିନ ☐ ପ୍ରତି ସପ୍ତାହ ☐ ପ୍ରତିମାସ

ଆପଣ ଏବେ ଗର୍ଭବତୀ ବା ସ୍ତନ୍ୟପାନ କରାଉଛନ୍ତି କି ————

***ବ୍ୟବହୃତ କୀଟନାଶକ:***

ଆପଣ କୀଟନାଶକ ପ୍ରୟୋଗ କରନ୍ତିକି ? ☐ ହଁ ☐ ନାଁ

ଶେଷଥର ପାଇଁ କେବେ କୀଟନାଶକ ସଂସ୍ପର୍ଶରେ ଆସିଥିଲେ ————

**୧. କେଉଁ ଶ୍ରେଣୀର କୀଟନାଶକ ଜମିରେ ବ୍ୟବହାର ହେଉଛି:**

ତୃଣକନାଶୀ ☐ କୀଟନାଶକ ☐ କବକନାଶୀ ☐ ଅନ୍ୟାନ୍ୟ ☐

**୨. ଆପଣ କେଉଁ କୀଟନାଶକ ବ୍ୟବହାର କରୁଛନ୍ତି:**

ସାଧାରଣ ନାମ ————, ବ୍ୟାବସାୟୀକ ନାମ————

କେଉଁଥି ପାଇଁ ବ୍ୟବହାର କରାଯାଇଛି ————

ବର୍ଷକୁ କେତେଥର ଏହାକୁ ବ୍ୟବହାର କରନ୍ତି ?

ଆପଣ ବର୍ଷସାରା ପ୍ରୟୋଗ କରନ୍ତି କି ? ☐ ହଁ ☐ ନାଁ

ମଝିରେ କିଛି ସମୟ ପାଇଁ ବନ୍ଦ କରାଯାଏ କି ? ☐ ହଁ ☐ ନାଁ

କେତେ ସମୟ ପାଇଁ ବନ୍ଦ କରାଯାଏ ————



Digitized by srujanika@gmail.com

କେଉଁ ପ୍ରକାର କାମ କରିବାକୁ ଆପଣଙ୍କୁ କୁହାଯାଇଛି ——————————
ପ୍ରୟୋଗ କରିବାର କେତେ ସମୟ ପରେ ଆଉ ଗୋଟିଏ କାମ କରିବାକୁ କୁହାଯାଏ ? ——————
ମାସରେ କେତେ ଥର ——————
ପ୍ରତିଥର ପ୍ରୟୋଗ କରିବା ପାଇଁ କେତେ ସମୟ ଦରକାର ହୁଏ ——————

**୩. ଯନ୍ତ୍ରପାତି**

ପ୍ରୟୋଗର ପଦ୍ଧତି (ବ୍ୟବହାର ହେଉଥିବା ଯନ୍ତ୍ରପାତି) ——————
ଯନ୍ତ୍ରପାତିର ଅବସ୍ଥା କିପରି ——————
ଏହାକୁ କିପରି ରଖାଯାଇଥାଏ ——————
ବ୍ୟବହାର କରିବା ବିଷୟରେ ତାଲିମ ଦିଆଯାଇଛି କି ——————

**୪. ସୁରକ୍ଷାକାରୀ ପୋଷାକପତ୍ର:**

ସୁରକ୍ଷାକାରୀ ପୋଷାକ/ଯନ୍ତ୍ର ଯୋଗାଇ ଦିଆଯାଏ କି ? ☐ ହଁ ☐ ନାଁ

ଯଦି ହଁ, ସେଗୁଡ଼ିକ କ'ଣ ?

ଶରୀରକୁ ପୁରା ଘୋଡେଇ ରଖୁଥିବା ଲମ୍ବା ପୋଷାକ ☐ ଦସ୍ତାନା ☐

ଆଖି ଓ ମୁହଁ ପାଇଁ ଢାଙ୍କୁଣୀ ☐ ଆପ୍ରନ୍ ଓ କୋଟ୍ ☐

ସୁରକ୍ଷାକାରୀ ଜୋତା ☐ ଶ୍ୱାସକ୍ରିୟା ସହାୟକ ଯନ୍ତ୍ରପାତି ☐

ବ୍ୟବହାର କରିସାରିବା ପରେ ସୁରକ୍ଷାକାରୀ ପୋଷାକ ସଫାକରା ହୁଏ କି? ☐ ହଁ ☐ ନାଁ

**୫. କୀଟନାଶକର ମିଶ୍ରଣ:**

ପ୍ରୟୋଗ ପୂର୍ବରୁ କୀଟନାଶକକୁ ମିଶାଇଥା'ନ୍ତି କି ? ☐ ହଁ ☐ ନାଁ

ଯଦି ନୁହେଁ, ତେବେ କିଏ ମିଶାଏ ——————

କାହା ସହ କୀଟନାଶକ ମିଶାଯାଏ ——————

କେତେ ପରିମାଣରେ ——————

ଏହାକୁ ଅନ୍ୟ କୀଟନାଶକ ସହ ମିଶାଯାଏ କି ? ☐ ହଁ ☐ ନାଁ

ଯଦି ହଁ, ସେଗୁଡ଼ିକ କ'ଣ ——————

କେତେ ପରିମାଣର ——————



Digitized by srujanika@gmail.com

୬. କୀଟନାଶକର ପ୍ରଭାବ:

ପ୍ରୟୋଗ ପରେ ଆପଣ ଅସୁସ୍ଥ ହୋଇପଡ଼ନ୍ତି କି ?

☐ ବାନ୍ତି ଲାଗିବା ☐ କମ୍ପ ଆସିବା

☐ ମୁଣ୍ଡ ବୁଲେଇବା ☐ ତଳିପେଟ କାଟିବା.

☐ ମୁଣ୍ଡବ୍ୟଥା ☐ ଜନନାଙ୍ଗରେ ବ୍ୟଥା

☐ ବାନ୍ତିହେବା ☐ ପରିସ୍ରା କରିବାବେଳେ ପୋଡ଼ିବା

☐ ନିଶ୍ୱାସ ନେବାରେ କଷ୍ଟ ହେବା ☐ ଘୋଳାବିନ୍ଧା ହେବା/ ଦୁର୍ବଳ ଲାଗିବା

☐ ଛାତିରୁନ୍ଧି ହେବା ☐ ପିଠିବ୍ୟଥା ☐ ଆଣ୍ଠୁଗଣ୍ଠି ଫୁଲିବା

☐ କୁଣ୍ଡେଇହେବା/ଚମଡ଼ାରେ ଧଳାଦାଗ/ଲାଲଦାଗ (ଦେହର କେଉଁ ଅଂଶରେ)

☐ ନଖରଙ୍ଗ ବଦଳିବା/ନଖର ବିକୃତି ଓ ଫୁଲିଯିବା/ ନଖ ଖସିପଡ଼ିବା

☐ ନାକରୁ ରକ୍ତ ପଡ଼ିବା ☐ ଝାପସା ଦେଖାଯିବା ☐ ଅନ୍ୟାନ୍ୟ

**ଆପଣ କୀଟନାଶକ ସଂସ୍ପର୍ଶରେ ଆସିଛନ୍ତି:**

ଶୁଙ୍ଘିବା ଯୋଗୁ ☐ ହଁ ☐ ନାଁ

ଚମଡ଼ା ଦେଇ ☐ ହଁ ☐ ନାଁ

ଦୁର୍ଘଟଣାବଶତଃ ଖାଇଦେଇ ☐ ହଁ ☐ ନାଁ

୭. **ସ୍ୱାସ୍ଥ୍ୟ ସଂପର୍କୀୟ**

୧. କୌଣସି ପ୍ରକାର ବିଷ ପ୍ରଭାବିତ ହେଲେ କାହା ପାଖକୁ ଯାଆନ୍ତି ?

୨. କେଉଁ ପ୍ରକାର ଚିକିତ୍ସା କରାଯାଏ:

ଔଷଧ: ପ୍ରକାର: ☐ କ୍ରିମ୍ ☐ ପାଣିଆ ☐ ଖାଇବା ପାଇଁ ଔଷଧ/ବଟିକା

୩. ନିୟମିତ ସ୍ୱାସ୍ଥ୍ୟ ପରୀକ୍ଷା ପାଇଁ ଯାଆନ୍ତି କି ?

୪. କେଉଁଠିକି ଯାଆନ୍ତି ?

୫. କିଏ ସ୍ୱାସ୍ଥ୍ୟ ପରୀକ୍ଷା କରନ୍ତି ?

୬. ବୃକ୍ଷରୋପଣ ବିଭାଗରେ ପ୍ରୟୋଗକାରୀଙ୍କୁ ନିୟମିତ ସ୍ୱାସ୍ଥ୍ୟ ପରୀକ୍ଷା କରିବା ପାଇଁ ନିୟମ ରହିଛି କି ?



Digitized by srujanika@gmail.com

# ପରିଶିଷ୍ଟ ୩

## ସ୍ୱାସ୍ଥ୍ୟ ଫର୍ଦ

ନାମ: ______________________ ପରିଚୟ ପତ୍ର ନଂ: ______________

ବୟସ: ______________________ ସ୍ଥାନ: ______________

| କ୍ର.ନଂ. | ବିଷ ପ୍ରଭାବର ଲକ୍ଷଣ | ତାରିଖ | | | | | | |
|---|---|---|---|---|---|---|---|---|
| | | | | | | | | |
| ୧ | ବାନ୍ତି ଲାଗିବା | | | | | | | |
| ୨ | ବାନ୍ତି ହେବା | | | | | | | |
| ୩ | ମୁଣ୍ଡବୁଲେଇବା | | | | | | | |
| ୪ | ମୁଣ୍ଡ ବିନ୍ଧା | | | | | | | |
| ୫ | ନାକରୁ ରକ୍ତ ପଡ଼ିବା | | | | | | | |
| ୬ | ନିଶ୍ୱାସ ନେବାରେ କଷ୍ଟ | | | | | | | |
| ୭ | ଛାତି ରୁନ୍ଧିହେବା | | | | | | | |
| ୮ | ପିଠିବ୍ୟଥା | | | | | | | |
| ୯ | କମ୍ପହେବା | | | | | | | |
| ୧୦ | ଆଣ୍ଠୁଫୁଲିବା | | | | | | | |



Digitized by srujanika@gmail.com

| କ୍ର.ନଂ. | ବିଷ ପ୍ରଭାବର ଲକ୍ଷଣ | ତାରିଖ | | | | | | |
|---|---|---|---|---|---|---|---|---|
| | | | | | | | | |
| ୧୧ | ଘୋଳାବିନ୍ଧା ହେବା | | | | | | | |
| ୧୨ | ତଳିପେଟରେ କଷ୍ଟ | | | | | | | |
| ୧୩ | ଜନନାଙ୍ଗରେ କଷ୍ଟ | | | | | | | |
| ୧୪ | ପରିସ୍ରା କରିବା ସମୟରେ କଷ୍ଟ | | | | | | | |
| ୧୫ | ଆଖି କୁଣ୍ଡେଇହେବା | | | | | | | |
| ୧୬ | ଝାପସା ଦେଖାଯିବା | | | | | | | |
| ୧୭ | ନଖ ଶେତା ପଡ଼ିବା | | | | | | | |
| ୧୮ | ଆଙ୍ଗୁଠି ଫୁଲିବା | | | | | | | |
| ୧୯ | ନଖ ଖସିପଡ଼ିବା | | | | | | | |
| ୨୦ | ଚମଡ଼ା ଫଳିଯିବା/ କୁଣ୍ଡେଇହେବା | | | | | | | |
| ୨୧ | ଗଣ୍ଠିବିନ୍ଧା ହେବା | | | | | | | |



Digitized by srujanika@gmail.com

# ଗୋଷ୍ଠୀ ନିରୀକ୍ଷଣ - ସାରାଂଶ

## କୀଟନାଶକ ପ୍ରତି ଗୋଷ୍ଠୀ ଆଧାରିତ ସଜାଗ ଦୃଷ୍ଟି କ'ଣ ?

- କୀଟନାଶକ ପ୍ରତି ଗୋଷ୍ଠୀ ଆଧାରିତ ସଜାଗ ଦୃଷ୍ଟି ଅର୍ଥ: କୀଟନାଶକର ବ୍ୟବହାର ଏବଂ ସେଗୁଡ଼ିକ ସୃଷ୍ଟି କରିଥିବା ସମସ୍ୟା ଉପରେ ସାଧାରଣ ଲୋକ ତଥ୍ୟ ସଂଗ୍ରହ କରିବା ।

- ଏଥିପାଇଁ ସମସ୍ତେ ଏକାଠି କାମ କରନ୍ତି । କୀଟନାଶକ ଉପରେ ତଥ୍ୟ ତଥା ଜନସାଧାରଣ ଓ ପରିବେଶ ଉପରେ ଏହାର କୁପ୍ରଭାବ ଆଦି ବିଷୟରେ ଟିପି ରଖନ୍ତି । ଏହାଛଡ଼ା କୀଟନାଶକର ବିକଳ୍ପ ବ୍ୟବସ୍ଥା ଉପରେ ମଧ୍ୟ ତଥ୍ୟ ସଂଗ୍ରହ କରନ୍ତି ।

## କୀଟନାଶକ ପ୍ରତି ଗୋଷ୍ଠୀ ଆଧାରିତ ସଜାଗ ଦୃଷ୍ଟି କ'ଣ କରିପାରିବ?

- କୀଟନାଶକ ଯୋଗୁଁ ସ୍ୱାସ୍ଥ୍ୟ, ଜମି ଓ ତାଙ୍କ ଗୋଷ୍ଠୀର ହେଉଥିବା କ୍ଷତି ବିଷୟରେ ଲୋକମାନେ ବୁଝିପାରିଲେ, ସେମାନେ ହୁଏତ କୀଟନାଶକ ବ୍ୟବହାର ବନ୍ଦ କରିପାରନ୍ତି ବା କମାଇପାରନ୍ତି ।

- କୀଟନାଶକ ବ୍ୟବହାର ଯୋଗୁଁ ହୋଇଥିବା କ୍ଷତି ବିଷୟରେ ଗୋଷ୍ଠୀ ତଥ୍ୟ ଏକାଠି କରିପାରିଲେ, କୀଟନାଶକକୁ ଉତ୍ସାହିତ କରିବା ନୀତିରେ ପରିବର୍ତ୍ତନ ଆଣିବା ପାଇଁ ସରକାରଙ୍କ ଉପରେ ଚାପ ପ୍ରୟୋଗ କରିହେବ । ଫଳରେ କାରଖାନାମାନଙ୍କ କାମକୁ ମଧ୍ୟ ନିୟନ୍ତ୍ରଣ କରିହେବ ।

## କେଉଁ ଦିଗ ପ୍ରତି ସଜାଗ ଦୃଷ୍ଟି ରଖିବ ?

- କୀଟନାଶକ ବ୍ୟବହାରକାରୀ ଅସୁସ୍ଥ ମନେକଲେ ଓ ତା'ର ଲକ୍ଷଣ ଦେଖାଗଲେ ।
- କୀଟନାଶକ କମ୍ପାନୀ କିପରି ତାଙ୍କ ଉତ୍ପାଦର ବିଜ୍ଞାପନ ଓ ବିକ୍ରି କରୁଛନ୍ତି ।
- ମାଟି ଓ ପରିବେଶ ଉପରେ କୀଟନାଶକ କ'ଣ ପ୍ରଭାବ ପକାଉଛି ।
- କୀଟନାଶକ ବ୍ୟବହାରର ସଫଳ ବିକଳ୍ପ ।
- ଆପଣଙ୍କ ଗୋଷ୍ଠୀରେ କୀଟନାଶକ ବ୍ୟବହାର ଉପରେ ଆପଣଙ୍କ ସଂପୃକ୍ତି



Digitized by srujanika@gmail.com



ନିଜ ସମାଜରେ ବିଷର ଚକ୍ରକୁ ପ୍ରତିହତ କର !

ଗୋଷ୍ଠୀକୁ ଉନ୍ନତ କରିବା ପାଇଁ ପଦକ୍ଷେପ ନିଅ !

ମୂଲ୍ୟ: ୨୫.୦୦

Digitized by srujanika@gmail.com